॥ ଶ୍ରୀହରିଃ ॥

1220▲

# ସାବିତ୍ରୀ ଓ ସତ୍ୟବାନ୍

## सावित्री और सत्यवान ( ओड़िआ )



गीताप्रेस गोरखपुर
GITA PRESS, GORAKHPUR

ଗୀତାପ୍ରେସ୍, ଗୋରଖପୁର

1220

॥ ଶ୍ରୀହରିଃ ॥

# ସାବିତ୍ରୀ ଓ ସତ୍ୟବାନ

सावित्री और सत्यवान् ( ओड़िआ )

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ଜୟଦୟାଲ ଗୋୟନ୍ଦକା

॥ ଶ୍ରୀହରିଃ ॥

# ନମ୍ର ନିବେଦନ

ମହର୍ଷି ବେଦବ୍ୟାସଙ୍କ ନିମନ୍ତେ କୁହାଯାଇଛି—**''ଅଚତୁର୍ବଦନୋ ବ୍ରହ୍ମା ଦ୍ୱିବାହୁରପରୋ ହରିଃ। ଅଭାଲଲୋଚନ ଶମ୍ଭୁଃ ଭଗବାନ୍ ବାଦରାୟଣ ॥''** ଅର୍ଥାତ୍ ଭଗବାନ୍ ବେଦବ୍ୟାସଙ୍କର ଚତୁର୍ମୁଖ ନ ଥିଲେ ମଧ୍ୟ ସେ ବ୍ରହ୍ମା ଅଟନ୍ତି, ସେ ଦୁଇଭୁଜବିଶିଷ୍ଟ ହୋଇଥିଲେ ମଧ୍ୟ ଦ୍ୱିତୀୟ ବିଷ୍ଣୁ ଅଟନ୍ତି ଏବଂ ତାଙ୍କର ଲଲାଟରେ ତୃତୀୟ ନେତ୍ର ନ ଥିଲେ ମଧ୍ୟ ଶିବ ଅଟନ୍ତି ଅର୍ଥାତ୍ ସେ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ସ୍ୱରୂପ। ଜଗତରେ ଯେତେ ଯାହା ଉତ୍କୃଷ୍ଟ କଥା ରହିଛି, ସେସବୁ ବ୍ୟାସଦେବଙ୍କର ଉଚ୍ଛିଷ୍ଟରୂପେ ଗଣ୍ୟ—**'ବ୍ୟାସୋଚ୍ଛିଷ୍ଟଂ ଜଗତ୍‌ସର୍ବମ୍'**। ସେହି ବ୍ୟାସଦେବ ହିଁ ରଚନା କରିଛନ୍ତି ମହାଭାରତ। ଉକ୍ତ ମହାଭାରତକୁ ସଂକ୍ଷିପ୍ତରୂପ ଦେଇଛନ୍ତି ତତ୍ତ୍ୱଜ୍ଞ ଭଗବତ୍‌ପ୍ରେମୀ ଜୀବନ୍ମୁକ୍ତ ମହାପୁରୁଷ ଶ୍ରୀ ଜୟଦୟାଲ ଗୋୟନ୍ଦକା (ଶେଠଜୀ)। ଏହିରୂପେ ମୂଳ ସଂସ୍କୃତରେ ବ୍ୟାସଦେବଙ୍କ ଦ୍ୱାରା ତଥା ସଂକ୍ଷିପ୍ତରୂପେ ଶେଠଜୀଙ୍କ ଦ୍ୱାରା (ହିନ୍ଦୀରେ) ଲିଖିତ ମହାଭାରତରୁ ସମସ୍ତଙ୍କ ପାଇଁ ଉପଯୋଗୀ ହେଲା ଭଳି କେତେକ ଆଖ୍ୟାନ ଚୟନ କରାଯାଇଛି। ଏହି ସବୁ ଆଖ୍ୟାନରେ କିଛି ନା କିଛି ବିଶେଷ ଶକ୍ତି ରହିଛି ଏବଂ ଏଗୁଡ଼ିକୁ ପଢ଼ିଲେ ପାଠକକୁ ବହୁତ ଉପକାର ମିଳେ। ସେହି ଆଖ୍ୟାନଗୁଡ଼ିକ ମଧ୍ୟରୁ ସାବିତ୍ରୀ ଓ ସତ୍ୟବାନଙ୍କ ଚରିତ ପାଠକମାନଙ୍କ ଉଦ୍ଦେଶ୍ୟରେ ଏହି ପୁସ୍ତକରେ ସଂକଳିତ କରାଯାଉଛି। ପାଠକମାନଙ୍କୁ ମୋର ବିନମ୍ର ନିବେଦନ ଯେ ସେମାନେ ଉକ୍ତ ପୁସ୍ତକକୁ ନିଜେ ପଢ଼ିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ପଢ଼ିବାକୁ ପ୍ରେରଣା ଦେବେ।

ବିନୀତ—

**ସ୍ୱାମୀ ରାମସୁଖଦାସ**

‘‘ଧ୍ୟାନାଭ୍ୟାସ ଏତେ ପ୍ରଗାଢ଼ ହେବା ଉଚିତ, ଯାହାଫଳରେ ନିଜ ଦେହଜ୍ଞାନ ନ ରହିବ । ସାକ୍ଷାତ୍ ଭଗବାନ ସାକାର ରୂପରେ ଆସି ଚେତନା ଜାଗ୍ରତ କରାଇଲେ ମଧ୍ୟ ସହଜରେ ଦେହଜ୍ଞାନ ନ ଆସିବା ଦରକାର । ଏହିପରି ଘଟିଥିଲା ସୁତୀକ୍ଷ୍ଣଙ୍କ ଜୀବନରେ । ସ୍ୱୟଂ ପ୍ରଭୁ ଶ୍ରୀରାମ ଆସି ଜାଗ୍ରତ କରାଇଥିଲେ ମଧ୍ୟ ତାଙ୍କର ଦେହଜ୍ଞାନ ଫେରି ନ ଥିଲା ।’’

‘‘ଏଭଳି ସ୍ଥିତି ଶୀଘ୍ର ଲାଭ କରିବାକୁ ହେଲେ କୌଣସି କଥାକୁ ଖାତିରି ନ କରି ନିରନ୍ତର ଅଣ୍ଟାଭିଡ଼ି ପ୍ରୟାସ କର ।’’

‘‘ମନୁଷ୍ୟ ସମୟର ମୂଲ୍ୟ ବୁଝିବା ଆବଶ୍ୟକ । ସମୟ ପ୍ରତିକ୍ଷଣ ସରି ସରି ଯାଉଛି । ମାନବଜୀବନର ସମୟ ଅମୂଲ୍ୟ । ଏହାକୁ ଭଜନ, ଧ୍ୟାନ, ସତ୍‌ସଙ୍ଗରୂପୀ ଅମୂଲ୍ୟ କାର୍ଯ୍ୟରେ ହିଁ ବିନିଯୋଗ କରିବା ଉଚିତ । ଯେଉଁମାନଙ୍କ ଜୀବନ କେବଳ ପେଟପୋଷିବାରେ ବିତିଯାଉଛି, ସେମାନେ ତ ନିପଟ ପଶୁ ସଙ୍ଗେ ସମାନ ।’’

‘‘ସାଂସାରିକ କାର୍ଯ୍ୟ କରିବାବେଳେ ସେହି କାର୍ଯ୍ୟ ଖରାପ ମନେ ହେବା ବିଶୁଦ୍ଧ ବୈରାଗ୍ୟ ନୁହେଁ, ଏଥିରେ ଅଳସୁଆମି ବି ରହିଛି । ଯଦି ବିଶୁଦ୍ଧ ବୈରାଗ୍ୟ ହୋଇଥାନ୍ତା, ତେବେ ଯେକୌଣସି କାର୍ଯ୍ୟ କରିବା ସମୟରେ ମଧ୍ୟ ନିରନ୍ତର ଭଜନ-ଧ୍ୟାନ ହେଉଥାନ୍ତା ।’’

‘‘ଖାଇବା, ପିଇବା, ଗ୍ଧଲିବା, ବୁଲିବା, କଥା କହିବା ଇତ୍ୟାଦି ସାଂସାରିକ କାର୍ଯ୍ୟ ବେକାର କାର୍ଯ୍ୟ; ଏସବୁ ବାଧ୍ୟ ହୋଇ କରିବାକୁ ପଡ଼ିଥାଏ । ଆମର ପ୍ରକୃତ କାର୍ଯ୍ୟ ହେଉଛି ଭଗବତ୍‌ସ୍ମରଣ; ଏହା ସବୁବେଳେ କରିବା ଉଚିତ ।’’

‘‘ଫଳାସକ୍ତି ଛାଡ଼ି ମାଲିକ ନିମନ୍ତେ ଯାହା କିଛି କରାଯାଏ, ତାହା ମଧ୍ୟ ଭଜନ (ସେଥିରେ ପଛକେ ନାମସ୍ମରଣ ହୋଇ ନ ପାରୁ) । ଏଭଳି ବିସ୍ମରଣକୁ ବିସ୍ମରଣ ବୋଲି ଭାବିବା ଉଚିତ ନୁହେଁ ।’’

‘‘ଯେପର୍ଯ୍ୟନ୍ତ ଭଜନ-ଧ୍ୟାନରେ କଠିନତା ଅନୁଭବ ହେଉଛି, ସେପର୍ଯ୍ୟନ୍ତ ବିଶ୍ୱାସରେ ଊଣା ରହିଛି । ପ୍ରକୃତରେ ଭଜନ-ଧ୍ୟାନରେ କୌଣସି ପରିଶ୍ରମ ଅନୁଭବ ହୁଏ ନାହିଁ ।’’

—ଶ୍ରୀ ଜୟଦୟାଲ ଗୋୟନ୍ଦକା

॥ ଶ୍ରୀହରିଃ ॥

# ସାବିତ୍ରୀ ଚରିତ୍ର

## ସାବିତ୍ରୀଙ୍କର ଜନ୍ମ ଓ ବିବାହ

ମହାଭାରତ ଯୁଦ୍ଧ ପୂର୍ବର ଘଟଣା। ଜୟଦ୍ରଥକୁ ପରାସ୍ତ କରି ତା'ହାତରୁ ଦ୍ରୌପଦୀଙ୍କୁ ମୁକ୍ତ କରିବା ପରେ ଧର୍ମରାଜ ଯୁଧିଷ୍ଠିର ମୁନିଋଷିଙ୍କ ଗହଣରେ ବସିଥାନ୍ତି। ମହର୍ଷିମାନେ ପାଣ୍ଡବମାନଙ୍କ ଉପରେ ପଡୁଥିବା ବଡ଼ ବଡ଼ ସଂକଟକୁ ଅନୁଭବ କରି ଶୋକ ପ୍ରକାଶ କରୁ ଥାନ୍ତି। ସେମାନଙ୍କ ମଧ୍ୟରୁ ମାର୍କଣ୍ଡେୟ ମୁନିଙ୍କୁ ଲକ୍ଷ୍ୟ କରି ଯୁଧିଷ୍ଠିର କହିଲେ—ଭଗବନ୍ ! ଆପଣ ତ ଅତୀତ, ଭବିଷ୍ୟତ ଓ ବର୍ତ୍ତମାନର ସବୁ ଘଟଣା ଜାଣନ୍ତି। ଦେବର୍ଷିମାନଙ୍କ ମଧ୍ୟରେ ଆପଣଙ୍କ ନାମ ଗଣ୍ୟ ହୁଏ। ମୋ ହୃଦୟରେ ଥିବା ଗୋଟିଏ ସନ୍ଦେହ ମୁଁ ଆପଣଙ୍କ ଆଗରେ ବ୍ୟକ୍ତ କରୁଛି, ଦୟାକରି ମୋ ସନ୍ଦେହ ମୋଚନ କରନ୍ତୁ। ଏ ସୌଭାଗ୍ୟଶାଳିନୀ ଦ୍ରୁପଦନନ୍ଦିନୀ ଯଜ୍ଞବେଦିରୁ ଉତ୍ପନ୍ନ ହୋଇଛି, ଏହାକୁ ଗର୍ଭବାସର କଷ୍ଟ ସହିବାକୁ ପଡ଼ି ନାହିଁ। ଆମର ପିତା ମହାତ୍ମା ପାଣ୍ଡୁଙ୍କର ପୁତ୍ରବଧୂ ହେବାର ଗୌରବ ଏହାକୁ ମିଳିଛି। ଏ କଦାପି ପାପ ବା ନିନ୍ଦିତ କର୍ମ କରି ନାହିଁ। ତାଛଡ଼ା ଏ ଧର୍ମର ତତ୍ତ୍ୱ ମଧ୍ୟ ଜାଣିଛି ଓ ତାହାକୁ ପାଳନ ମଧ୍ୟ କରୁଛି। ଅଥଚ ଆଶ୍ଚର୍ଯ୍ୟର କଥା ଯେ, ଏପରି ନାରୀକୁ ପୁଣି ଜୟଦ୍ରଥ ଅପହରଣ କରିନେଲା ! ଏଭଳି ଅପମାନ ପୁଣି ଆମକୁ ସହିବାକୁ ପଡ଼ିଲା !! ହାୟ ! ଆତ୍ମୀୟସ୍ୱଜନଙ୍କ ଠାରୁ ବିଯୁକ୍ତ ହୋଇ ଆମେମାନେ ଆଜି ବଣଜଙ୍ଗଲରେ ବୁଲି ବୁଲି ନାନା ପ୍ରକାର କଷ୍ଟସହନପୂର୍ବକ କାଳ କାଟୁଛୁ। ତେଣୁ ମୁଁ ପଚାରୁଛି, ମୋ ପରି ମନ୍ଦଭାଗ୍ୟ ପୁରୁଷ କଣ ଆପଣ ଜଗତରେ ଆଉ କେଉଁଠି ଦେଖିଛନ୍ତି, ନା ତା' ବିଷୟରେ ଶୁଣିଛନ୍ତି?

**ମାର୍କଣ୍ଡେୟ କହିଲେ**—ରାଜନ୍ ! ପ୍ରଭୁ ଶ୍ରୀରାମଙ୍କୁ ମଧ୍ୟ ବନବାସ ଓ ସ୍ତ୍ରୀବିୟୋଗର ଘୋର କଷ୍ଟ ଭୋଗିବାକୁ ପଡ଼ିଥିଲା। ରାକ୍ଷସରାଜ

ଦୁରାତ୍ମା ରାବଣ ମାୟାଜାଲ ବିସ୍ତାର କରି ଶ୍ରୀରାମଙ୍କ ପତ୍ନୀ ସୀତାଙ୍କୁ ହରଣ କରିନେଲା। ବାଟରେ ଜଟାୟୁ ତାକୁ ବାଧା ଦେବାରୁ ସେ ତାକୁ ମଧ୍ୟ ମାରିଦେଲା। ତାପରେ ପ୍ରଭୁ ରାମଚନ୍ଦ୍ର ସୁଗ୍ରୀବଙ୍କ ସହାୟତାରେ ସମୁଦ୍ରରେ ସେତୁ ବାନ୍ଧି ଲଙ୍କାରେ ପ୍ରବେଶ କଲେ ଏବଂ ତୀକ୍ଷ୍ଣ ଶରରେ ଲଙ୍କାକୁ ବିଧ୍ୱଂସ କରି ସୀତାଙ୍କୁ ଫେରାଇ ଆଣିଲେ।

ମହାବାହୁ ଯୁଧିଷ୍ଠିର ! ଏହିରୂପେ ପୂର୍ବକାଳରେ ଅମିତ ପରାକ୍ରମୀ ପ୍ରଭୁ ଶ୍ରୀରାମ ବନବାସରେ ରହି ବହୁତ କଷ୍ଟ ଭୋଗିଥିଲେ। ହେ ପୁରୁଷସିଂହ ! ତୁମେ ହେଉଛ କ୍ଷତ୍ରିୟ। ତେଣୁ ଶୋକ କର ନାହିଁ। ତୁମେ ନିଜ ବାହୁବଳର ଭରସାରେ ପ୍ରତ୍ୟକ୍ଷ ଫଳ ପ୍ରଦାନକାରୀ ମାର୍ଗରେ ଚାଲୁଛ। ଏଥିରେ ତୁମର ତିଳେମାତ୍ର ଅପରାଧ ନାହିଁ। ରାମଚନ୍ଦ୍ର ତ ପୁଣି ଏକୁଟିଆ ହୋଇ ମଧ୍ୟ ପ୍ରବଳ ପରାକ୍ରମୀ ରାବଣକୁ ଯୁଦ୍ଧରେ ସଂହାର କରି ଜାନକୀଙ୍କୁ ମୁକ୍ତ କରି ଆଣିପାରିଥିଲେ ! କେବଳ ବାନର ଓ ଭାଲୁଙ୍କ ଛଡା ତାଙ୍କର ଆଉ କିଏ ସହାୟକ ଥିଲେ ଯେ? ତେଣୁ ଏସବୁ କଥା ଉପରେ ତୁମେ ଭଲ ଭାବରେ ବିଚାର କର। ଏହିପରି କହି ମତିମାନ ମାର୍କଣ୍ଡେୟ ମୁନି ରାଜା ଯୁଧିଷ୍ଠିରଙ୍କୁ ଧୈର୍ଯ୍ୟ ଦେଲେ।

**ଯୁଧିଷ୍ଠିର ପଚାରିଲେ**—ଏ ଦ୍ରୌପଦୀ ପାଇଁ ମୋତେ ଯେତେ ଦୁଃଖ ହେଉଛି, ମୋ ନିଜ ପାଇଁ, ମୋ ଭାଇମାନଙ୍କ ପାଇଁ କିଂବା ରାଜ୍ୟ ପାଇଁ ମଧ୍ୟ ମୋ ମନରେ ସେତେ ଦୁଃଖ ହେଉ ନାହିଁ। ଏ ଯେଉଁଭଳି ପତିବ୍ରତା, ଏଭଳି ଆଉ କୌଣସି ଭାଗ୍ୟବତୀ ନାରୀ କଣ ଆପଣ ଆଗରୁ କେବେ ଦେଖିଛନ୍ତି, ନା ତା' ବିଷୟରେ ଶୁଣିଛନ୍ତି ?

**ମାର୍କଣ୍ଡେୟ କହିଲେ**—ରାଜନ୍ ! ରାଜକନ୍ୟା ସାବିତ୍ରୀ ଯେପରି କୁଳୀନା ନାରୀମାନଙ୍କର ସୌଭାଗ୍ୟରୂପୀ ପତିବ୍ରତା ଧର୍ମର ସୁଯଶ ଲାଭ କରିଥିଲେ, ମୁଁ ବର୍ତ୍ତମାନ ସେହି କଥା କହୁଛି, ଶୁଣ। ମଦ୍ର ଦେଶରେ ଅଶ୍ୱପତି ନାମରେ ଜଣେ ପରମ ଧାର୍ମିକ ଓ ବ୍ରାହ୍ମଣସେବୀ ରାଜା ରାଜୁତି କରୁଥିଲେ। ସେ ଅତ୍ୟନ୍ତ ଉଦାରହୃଦୟ, ସତ୍ୟନିଷ୍ଠ, ଜିତେନ୍ଦ୍ରିୟ, ଦାନୀ, ଚତୁର, କ୍ଷମାଶୀଳ ଏବଂ ପୁରବାସୀ ତଥା ଦେଶବାସୀଙ୍କର ଅତି ପ୍ରିୟ

ଥିଲେ। ସେ ସକଳ ପ୍ରାଣୀଙ୍କ ହିତରେ ତତ୍ପର ରହୁଥିଲେ। ସେହି ନିୟମନିଷ୍ଠ ରାଜାଙ୍କ ଔରସରେ ତାଙ୍କ ଧର୍ମଶୀଳା ବଡ଼ ରାଣୀ ଗର୍ଭବତୀ ହେଲେ ଏବଂ ତାଙ୍କଠାରୁ ଯଥାସମୟରେ ଗୋଟିଏ କମଳଲୋଚନା କନ୍ୟା ଜନ୍ମ ହେଲା। ରାଜା ପ୍ରସନ୍ନ ମନରେ ସେହି କନ୍ୟାଟିର ଜାତକର୍ମାଦି ସମସ୍ତ ସଂସ୍କାର କଲେ। ସାବିତ୍ରୀ ମନ୍ତ୍ରରେ ଆହୁତି ଦେଇ ଯଜ୍ଞ କରିବା ଫଳରେ ସାବିତ୍ରୀ ଦେବୀ ସେହି କନ୍ୟାଟି ରାଜାଙ୍କୁ ପ୍ରଦାନ କରିଥିଲେ; ସେଥିପାଇଁ ବ୍ରାହ୍ମଣମାନେ ଓ ରାଜା ଅଶ୍ୱପତି ଝିଅଟିର ନାମ ରଖିଲେ 'ସାବିତ୍ରୀ'।

ମୂର୍ତ୍ତିମତୀ ଲକ୍ଷ୍ମୀଙ୍କ ପରି ଝିଅଟି ବଢ଼ିବାକୁ ଲାଗିଲା। ଯଥାସମୟରେ ସେ ଯୌବନାବସ୍ଥାରେ ପଦାର୍ପଣ କରିବାରୁ ମହାରାଜା ଅଶ୍ୱପତି ତା' ପାଇଁ ବର ଖୋଜିଲେ। କିନ୍ତୁ ଉପଯୁକ୍ତ ବର ନ ମିଳିବାରୁ ସେ ବହୁତ ଚିନ୍ତିତ ହୋଇପଡ଼ିଲେ। ତେଣୁ ସେ ସାବିତ୍ରୀକୁ କହିଲେ—''ମାଆରେ! ଏବେ ତୁ ବିବାହଯୋଗ୍ୟା ହୋଇଗଲୁଣି; କିନ୍ତୁ ତୋ ପାଇଁ ଉପଯୁକ୍ତ ବର ମିଳି ପାରି ନାହିଁ। ତେଣୁ ତୁ ନିଜେ ହିଁ ତୋର ବର ଖୋଜ। ଧର୍ମଶାସ୍ତ୍ରର ନିର୍ଦ୍ଦେଶ ଅଛି ଯେ, କନ୍ୟା ବିବାହଯୋଗ୍ୟା ହୋଇଯିବା ପରେ ଯେଉଁ ପିତା କନ୍ୟାଦାନ କରେ ନାହିଁ, ସେଭଳି ପିତା ନିନ୍ଦନୀୟ; ଋତୁକାଳରେ ଯେଉଁ ପତି ସ୍ତ୍ରୀସମାଗମ କରେ ନାହିଁ, ସେଭଳି ପତି ନିନ୍ଦନୀୟ ଏବଂ ସ୍ୱାମୀ ମରିଯିବା ପରେ ବିଧବା ହୋଇଯାଇଥିବା ମାଆକୁ ଯେଉଁ ପୁତ୍ର ପାଳନପୋଷଣ କରେ ନାହିଁ, ସେଭଳି ପୁତ୍ର ନିନ୍ଦନୀୟ।* ତେଣୁ ତୁ ଶୀଘ୍ର ଶୀଘ୍ର ତୋର ବର ଖୋଜ ଏବଂ ଏଭଳି କାମ କର, ଯାହାଫଳରେ ମୋତେ ଦେବତାଙ୍କ ପାଖରେ ଅପରାଧୀ ହେବାକୁ ନ ପଡ଼ିବ।'' ଝିଅକୁ ଏଭଳି କହିସାରି ସେ ତାଙ୍କର ବୟୋବୃଦ୍ଧ ମନ୍ତ୍ରୀମାନଙ୍କୁ ସାବିତ୍ରୀଙ୍କ ସଙ୍ଗରେ ନିଜ ନିଜ ବାହନ ଧରି ଯିବାକୁ ଆଦେଶ ଦେଇଦେଲେ।

---

* ଅପ୍ରଦାତା ପିତା ବାଚ୍ୟୋ ବାଚ୍ୟଶ୍ଚାନୁପୟନ୍ ପତିଃ।
ମୃତେ ଭର୍ତ୍ତରି ପୁତ୍ରଶ୍ଚ ବାଚ୍ୟୋ ମାତୁରରକ୍ଷିତା॥
(ମହାଭା. ବନ. ୨୯୩।୩୫)

ତପସ୍ୱିନୀ ସାବିତ୍ରୀ ସାମାନ୍ୟ ଲଜ୍ଜା ପ୍ରକାଶ କରି ପିତାଙ୍କ ଆଦେଶକୁ ଶିରୋଧାର୍ଯ୍ୟ କଲେ ଏବଂ ପିତାଙ୍କୁ ନମସ୍କାର କରି ସୁବର୍ଣ୍ଣ ରଥରେ ବସି ବୟୋବୃଦ୍ଧ ମନ୍ତ୍ରୀମାନଙ୍କ ସହ ବର ଖୋଜିବାକୁ ବାହାରିପଡ଼ିଲେ। ସେ ରାଜର୍ଷିମାନେ ରହି ତପସ୍ୟା କରୁଥିବା ତପୋବନକୁ ଗଲେ ଏବଂ ସେଠାରେ ବାସ କରୁଥିବା ସବୁ ମାନନୀୟ ବୃଦ୍ଧମାନଙ୍କ ପଦବନ୍ଦନା କରି କ୍ରମାନ୍ୱୟରେ ଅନ୍ୟାନ୍ୟ ବନରେ ମଧ୍ୟ ବିଚରଣ କଲେ। ଏହିରୂପେ ସେ ସମସ୍ତ ତୀର୍ଥସ୍ଥାନରେ ଉତ୍ତମ ବ୍ରାହ୍ମଣମାନଙ୍କୁ ଧନ ଦାନ କରି କରି ନାନା ଦେଶରେ ଭ୍ରମଣ କଲେ।

ହେ ରାଜନ୍ ! ଦିନେ ମଦ୍ରରାଜ ଅଶ୍ୱପତି ଆପଣା ସଭାଭବନରେ ବସି ଦେବର୍ଷି ନାରଦଙ୍କ ସଙ୍ଗେ ବାର୍ତ୍ତାଳାପ କରୁଥିଲେ। ଠିକ୍ ସେତିକିବେଳେ ମନ୍ତ୍ରୀମାନଙ୍କ ସହ ସମସ୍ତ ତୀର୍ଥରେ ବିଚରଣ କରିସାରି ସାବିତ୍ରୀ ଆସି ପହଞ୍ଚିଗଲେ। ସେଠାରେ ପିତାଙ୍କ ସଙ୍ଗେ ମହର୍ଷି ନାରଦ ବସିଥିବାର ଦେଖି ସେ ଯାଇ ଉଭୟଙ୍କ ଚରଣରେ ପ୍ରଣାମ କଲେ। ତାଙ୍କୁ ଦେଖି ନାରଦ ରାଜାଙ୍କୁ ପଚ୍ଚରିଲେ—"ରାଜନ୍ ! ଆପଣଙ୍କର ଏ କନ୍ୟା କେଉଁଠିକି ଯାଇଥିଲା ଏବଂ ବର୍ତ୍ତମାନ କେଉଁଠୁ ଆସିଲା? ଏ ତ ଯୁବାବସ୍ଥା ପ୍ରାପ୍ତ ହୋଇସାରିଲାଣି, ଆପଣ ଏହାର ବିବାହ କରୁ ନାହାନ୍ତି କାହିଁକି ?" ଅଶ୍ୱପତି କହିଲେ—"ମୁଁ ତ ଏହାକୁ ସେହି କାର୍ଯ୍ୟ ଉଦ୍ଦେଶ୍ୟରେ ହିଁ ପଠାଇଥିଲି। ଆଜି ହିଁ ଏ ଫେରୁଛି। ସେ କାହାକୁ ବରରୂପେ ବାଛିଛି, ଆପଣ ତାକୁ ପଚ୍ଚରି ବୁଝନ୍ତୁ ନାହାନ୍ତି !" ରାଜା ସାବିତ୍ରୀକୁ ମଧ୍ୟ ସମସ୍ତ ବୃତ୍ତାନ୍ତ ଶୁଣାଇବାକୁ ଅନୁମତି ଦେଲେ।

**ପିତାଙ୍କ ଆଦେଶରେ ସାବିତ୍ରୀ କହିଲେ**—ଶାଲ୍ୱଦେଶରେ ଦ୍ୟୁମତ୍-ସେନ ନାମରେ ଜଣେ ପ୍ରସିଦ୍ଧ ଧର୍ମାତ୍ମା ରାଜା ଥିଲେ। ପରବର୍ତ୍ତୀ କାଳରେ ସେ ଅନ୍ଧ ହୋଇଯାଇଥିଲେ। ତାଙ୍କ ଆଖି ନଷ୍ଟ ହୋଇଯିବାରୁ ଏବଂ ତାଙ୍କ ପୁତ୍ର ଛୋଟ ଥିବାରୁ ସେହି ସୁଯୋଗରେ ତାଙ୍କର ପୁରୁଣା ଶତ୍ରୁ ପଡ଼ୋଶୀ ଦେଶର ରାଜା ତାଙ୍କ ରାଜ୍ୟ ଛଡ଼ାଇନେଲେ। ସେହିଦିନଠାରୁ ସେ ନିଜର ପୁତ୍ର ଓ ପତ୍ନୀକୁ ସଙ୍ଗରେ ଧରି ବନକୁ ପଳାଇଗଲେ ଏବଂ ଏବେ

ବନରେ ରହି ବଡ଼ ବଡ଼ କଠିନ ବ୍ରତ ପାଳନପୂର୍ବକ ତପସ୍ୟା କରୁଛନ୍ତି। ତାଙ୍କର ସେହି ଏକମାତ୍ର ପୁତ୍ରର ନାମ ସତ୍ୟବାନ। ସେ ଏବେ ବଡ଼ ହୋଇଗଲେଣି। ସେ ହିଁ ମୋର ବର ହେବାର ଯୋଗ୍ୟ। ମୁଁ ତାଙ୍କୁ ହିଁ ମନେ ମନେ ସ୍ୱାମୀରୂପେ ବରଣ କରିଛି।

**ଏକଥା ଶୁଣି ନାରଦ କହିଲେ**—ହାୟ ରାଜନ୍ ! ସାବିତ୍ରୀ ବଡ଼ ଭୁଲ୍ କରିଦେଲା। ବଡ଼ ଦୁଃଖର କଥା ଯେ ସାବିତ୍ରୀ ଅସଲ କଥା ନ ଜାଣି କେବଳ ଗୁଣବାନ୍ ବୋଲି ବୁଝି ସତ୍ୟବାନଙ୍କୁ ବରଣ କଲା। ଏ ରାଜକୁମାରଙ୍କ ପିତା ଓ ମାତା ଉଭୟେ ସତ୍ୟଭାଷଣ କରିଥାନ୍ତି; ତେଣୁ ବ୍ରାହ୍ମଣମାନେ ରାଜକୁମାରର ନାମ ରଖିଥିଲେ 'ସତ୍ୟବାନ'।

**ରାଜା ପଗ୍ଚରିଲେ**—ଦ୍ୟୁମତ୍‌ସେନଙ୍କର ସ୍ନେହର ରାଜକୁମାର ସତ୍ୟବାନ କଣ ତେଜସ୍ୱୀ, ବୁଦ୍ଧିମାନ୍, କ୍ଷମାବାନ୍ ଓ ବୀର ନୁହନ୍ତି?

**ନାରଦ କହିଲେ**—ସେ ଯେ ଗୁଣବାନ୍ ନୁହନ୍ତି, ସେ କଥା ନୁହେଁ। ଦ୍ୟୁମତ୍‌ସେନଙ୍କର ସେହି ପୁତ୍ର ସତ୍ୟବାନ ସୂର୍ଯ୍ୟଙ୍କ ପରି ତେଜସ୍ୱୀ, ବୃହସ୍ପତିଙ୍କ ପରି ବୁଦ୍ଧିମାନ୍, ଇନ୍ଦ୍ରଙ୍କ ପରି ବୀର, ପୃଥିବୀ ପରି କ୍ଷମାଶୀଳ, ରନ୍ତିଦେବଙ୍କ ପରି ଦାନୀ, ଉଶୀନରଙ୍କ ପୁତ୍ର ଶିବିଙ୍କ ପରି ବ୍ରହ୍ମଣ୍ୟ ଓ ସତ୍ୟବାଦୀ, ଯଯାତିଙ୍କ ପରି ଉଦାର, ଚନ୍ଦ୍ରଙ୍କ ପରି ପ୍ରିୟଦର୍ଶନ ଏବଂ ଅଶ୍ୱିନୀକୁମାରଙ୍କ ପରି ଅଦ୍ୱିତୀୟ ରୂପବାନ। ସେ ଜିତେନ୍ଦ୍ରିୟ, ମୃଦୁ ସ୍ୱଭାବଶୀଳ, ବୀର ଓ ସତ୍ୟବାଦୀ। ସେ ଖୁବ୍ ମେଳାପି, ଈର୍ଷାଶୂନ୍ୟ, ଲଜ୍ଜାବନ୍ତ ଓ ତେଜସ୍ୱୀ। ତପ ଓ ସୁଶୀଳତା ଭିତରେ ବଢ଼ିଥିବା ବ୍ରାହ୍ମଣମାନେ ସଂକ୍ଷେପରେ ତାଙ୍କ ବିଷୟରେ କହିଥାନ୍ତି ଯେ ତାଙ୍କ ଭିତରେ ସରଳତା ନିତ୍ୟ ନିବାସ କରେ ଏବଂ ସେ ସରଳତାରେ ଅବିଚଳରୂପେ ପ୍ରତିଷ୍ଠିତ ହୋଇଯାଇଛନ୍ତି।

**ଅଶ୍ୱପତି କହିଲେ**—ଆପଣ ତ ତାଙ୍କୁ ସମସ୍ତ ସଦ୍‌ଗୁଣସମ୍ପନ୍ନ ବୋଲି କହୁଛନ୍ତି! ତଥାପି ତାଙ୍କଠାରେ କେଉଁ ଦୋଷ ରହିଛି, ତାହା ମୋତେ କହନ୍ତୁ।

**ନାରଦ କହିଲେ**—ତାଙ୍କର କେବଳ ଗୋଟିଏ ଦୋଷ ରହିଛି;

ସେହି ଗୋଟିଏ ମାତ୍ର ଦୋଷ ହେତୁ ତାଙ୍କର ସମସ୍ତ ଗୁଣ ପରାଭୂତ ହୋଇଯାଇଛି। ତାହା ଏପରି ଦୋଷ ଯେ, କୌଣସି ପ୍ରକାରେ ତାହାର ନିବାରଣ କରିବା ମଧ୍ୟ ଅସମ୍ଭବ। ସେହି ଦୋଷଟି ହେଲା– ଆଜିଠାରୁ ଗୋଟିଏ ବର୍ଷ ପରେ ସତ୍ୟବାନଙ୍କର ଆୟୁ ସମାପ୍ତ ହୋଇଯିବ।

**ଏହା ଶୁଣି ରାଜା ସାବିତ୍ରୀଙ୍କୁ କହିଲେ**—ମାଆ ସାବିତ୍ରୀ! ଶୁଣ। ତୁ ଆଉ ଥରେ ଯାଆ ଏବଂ ଆଉ କାହାକୁ ବରରୂପେ ଚୟନ କର। ଦେବର୍ଷି ନାରଦ କହୁଛନ୍ତି ଯେ ସତ୍ୟବାନ ହେଉଛନ୍ତି ଅଳ୍ପାୟୁ। ମାତ୍ର ବର୍ଷେ ପରେ ସେ ମରିଯିବେ।

**ସାବିତ୍ରୀ କହିଲେ**—ବାପା ! କାଠ ବା ପଥର ଭାଙ୍ଗିଗଲା ବେଳେ ଥରେମାତ୍ର ତାର ମୂଳ ଖଣ୍ଡରୁ ପୃଥକ୍ ହୁଏ, କନ୍ୟାଦାନ ଥରେମାତ୍ର କରାଯାଇଥାଏ ଏବଂ 'ମୁଁ ଦାନ କଲି' ଏଭଳି ସଂକଳ୍ପ ଥରେମାତ୍ର ହିଁ କରାଯାଏ। ଏ ତିନୋଟି କଥା ଥରେ ଥରେ ହୁଏ। ଏବେ ମୁଁ ଯାହାଙ୍କୁ ଥରେ ବରଣ କରିସାରିଛି, ସେ ଦୀର୍ଘାୟୁ ହୋଇଥାନ୍ତୁ, କି ଅଳ୍ପାୟୁ ହୋଇଥାନ୍ତୁ, ଗୁଣବାନ ହୋଇଥାନ୍ତୁ, କି ଗୁଣହୀନ ହୋଇଥାନ୍ତୁ, ସେ ହିଁ ମୋର ସ୍ୱାମୀ ହେବେ। ମୁଁ ଆଉ କାହାରିକୁ ବରଣ କରିପାରିବି ନାହିଁ*। ପ୍ରଥମେ ମନରେ ନିର୍ଣ୍ଣୟ କରି ତାପରେ ମୁଖରେ ପ୍ରକାଶ କରାଯାଏ ଏବଂ ତାପରେ ତାହା କର୍ମରେ ଅଭିବ୍ୟକ୍ତ ହୁଏ। ତେଣୁ ମୋ ନିମନ୍ତେ ମୋ ମନ ହିଁ ପରମ ପ୍ରମାଣ।

**ନାରଦ କହିଲେ**—ରାଜନ୍ ! ତୁମ କନ୍ୟା ସାବିତ୍ରୀର ବୁଦ୍ଧି ଖୁବ୍ ସ୍ଥିର ଏବଂ ଅଟଳ। ତେଣୁ ଏହାକୁ କୌଣସି ପ୍ରକାରେ ଧର୍ମରୁ ବିଚଳିତ କରାଯାଇ ପାରିବ ନାହିଁ। ସତ୍ୟବାନଙ୍କ ଠାରେ ଯେଉଁ ସବୁ ଗୁଣ ଅଛି,

---

* ସକୃଦଂଶୋ ନିପତତି ସକୃତ୍ କନ୍ୟା ପ୍ରଦୀୟତେ।
ସକୃଦାହ ଦଦାନୀତି ତ୍ରୀଣ୍ୟେତାନି ସକୃତ୍ ସକୃତ୍॥
ଦୀର୍ଘାୟୁରଥବାଳ୍ପାୟୁଃ ସଗୁଣୋ ନିର୍ଗୁଣୋଽପି ବା।
ସକୃଦ୍ ବୃତୋ ମୟା ଭର୍ତ୍ତା ନ ଦ୍ୱିତୀୟଂ ବୃଣୋମ୍ୟହମ୍॥
(ମହାଭା. ବନ. ୨୯୪। ୨୬, ୨୭)

ତାହା ଅନ୍ୟ କାହାରି ଠାରେ ନାହିଁ । ତେଣୁ ମୋ ମତରେ ଆପଣ ତାହାଙ୍କୁ ହିଁ କନ୍ୟା ଦାନ କରିଦେବାଟା ଉତ୍ତମ ହେବ* ।

**ରାଜା କହିଲେ**—ଆପଣ ଯାହା କହିଲେ ଠିକ୍ କଥା । ଆପଣଙ୍କ କଥାକୁ ଟାଳିବା ଅନୁଚିତ ହେବ । ଆପଣ ତ ମୋ ଗୁରୁ; ତେଣୁ ମୁଁ ନିଶ୍ଚୟ ଆପଣଙ୍କ ଆଦେଶ ପାଳନ କରିବି ।

ଏହାପରେ କନ୍ୟାଦାନ ବିଷୟରେ ନାରଦଙ୍କ ଠାରୁ ପରାମର୍ଶ ନେଇ ତଦନୁସାରେ ରାଜା ଅଶ୍ୱପତି ସମସ୍ତ ବୈବାହିକ ସାମଗ୍ରୀ ସରଞ୍ଜାମ ସଂଗ୍ରହ କଲେ ଏବଂ ବୟୋବୃଦ୍ଧ ବ୍ରାହ୍ମଣ ତଥା ପୁରୋହିତଙ୍କ ସମେତ ସମସ୍ତ ଋତ୍ୱିଜଙ୍କୁ ଡକାଇ ଶୁଭ ଦିନ ଦେଖି କନ୍ୟାକୁ ସଙ୍ଗରେ ନେଇ ରାଜା ଦ୍ୟୁମତ୍ସେନଙ୍କ ଆଶ୍ରମ ଅଭିମୁଖେ ଯାତ୍ରା କଲେ । ଦ୍ୟୁମତ୍ସେନ ଗୋଟିଏ ପବିତ୍ର ବନରେ ରହୁଥିଲେ । ତାଙ୍କ ଆଶ୍ରମ ପାଖାପାଖି ପହଞ୍ଚି ରାଜା ଅଶ୍ୱପତି ବ୍ରାହ୍ମଣଙ୍କ ମେଳରେ ପାଦରେ ଚାଲି ଚାଲି ତାଙ୍କ ନିକଟକୁ ଗଲେ । ସେଠାରେ ସେ ଦେଖିଲେ ଯେ ନେତ୍ରହୀନ ରାଜା ଦ୍ୟୁମତ୍ସେନ ଗୋଟିଏ ଶାଳବୃକ୍ଷ ତଳେ କୁଶାସନରେ ବସିଛନ୍ତି । ରାଜା ଅଶ୍ୱପତି ରାଜର୍ଷି ଦ୍ୟୁମତ୍ସେନଙ୍କୁ ଯଥାଯୋଗ୍ୟ ପୂଜା କଲେ ଏବଂ ବିନମ୍ର ଭାବରେ ନିଜର ପରିଚୟ ଦେଲେ ।

ଧର୍ମଜ୍ଞ ରାଜର୍ଷି ଅର୍ଘ୍ୟ ଓ ଆସନ ଦେଇ ରାଜା ଅଶ୍ୱପତିଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କଲେ ଏବଂ ପରେ ଆଗମନର ଅଭିପ୍ରାୟ ପଚାରିଲେ । ଅଶ୍ୱପତି କହିଲେ—''ହେ ରାଜର୍ଷି ! ମୋର ଏହି ରୂପବତୀ କନ୍ୟାର ନାମ ସାବିତ୍ରୀ । ମୋର ଇଚ୍ଛା, ଆପଣ ଏହାକୁ ଆପଣଙ୍କ ପୁତ୍ରବଧୂ ଭାବରେ ଗ୍ରହଣ କରନ୍ତୁ'' ।

---

* ସ୍ଥିରା ବୁଦ୍ଧିର୍ନରଶ୍ରେଷ୍ଠ ସାବିତ୍ର୍ୟା ଦୁହିତସ୍ତବ ।
ନୈଷା ବାରୟିତୁଂ ଶକ୍ୟା ଧର୍ମାଦସ୍ମାତ୍ କଥଞ୍ଚନ ॥
ନାନ୍ୟସ୍ମିନ୍ ପୁରୁଷେ ସନ୍ତି ଯେ ସତ୍ୟବତି ବୈ ଗୁଣାଃ ।
ପ୍ରଦାନମେବ ତସ୍ମାନ୍ମେ ରୋଚତେ ଦୁହିତୁସ୍ତବ ॥
(ମହାଭା. ବନ. ୨୯୪ । ୨୯, ୩୦)

**ଦ୍ୟୁମତ୍‌ସେନ କହିଲେ**—ମୁଁ ରାଜ୍ୟଚ୍ୟୁତ ହୋଇଯାଇଛି ଏବଂ ଏଠାରେ ବନରେ ରହି ତପସ୍ୱୀ ଭାବରେ ସଂଯମିତ ଜୀବନଯାପନ କରୁଛି। ଆପଣଙ୍କ ସୁକୁମାରୀ କନ୍ୟା ପକ୍ଷେ ବନବାସର ଏତେ କଷ୍ଟ ସହିବା ଦୁଷ୍କର ହେବ। ସେ ଏଠି ଆଶ୍ରମରେ ରହି ଏତେ କଷ୍ଟରେ କିପରି କାଳ କାଟିବ ?

**ଅଶ୍ୱପତି କହିଲେ**—ରାଜନ୍ ! ସୁଖ-ଦୁଃଖ ତ ସମୟାନୁସାରେ ଆସେ ଏବଂ ପୁଣି ଚାଲିଯାଏ। ଏକଥା ମୁଁ ଭଲଭାବେ ଜାଣିଛି ଏବଂ ମୋ ଝିଅ ମଧ୍ୟ ଜାଣିଛି। ତେଣୁ ମୋତେ ଆପଣ ଏଭଳି ନିରାଶ ନ କରନ୍ତୁ। ମୁଁ ଭଲଭାବେ ବୁଝିବିଚାରି ଆପଣଙ୍କ ପାଖକୁ ଆସିଛି।

**ଦ୍ୟୁମତ୍‌ସେନ କହିଲେ**—ରାଜନ୍ ! ମୁଁ ତ ବହୁପୂର୍ବରୁ ଆପଣଙ୍କ ସଙ୍ଗେ ବନ୍ଧୁ ବାନ୍ଧିବା ପାଇଁ ଭାବିଥିଲି, କିନ୍ତୁ ମୋର ରାଜ୍ୟ ଚାଲିଯିବାରୁ ସେ ଭାବନା ଛାଡ଼ି ଦେଇଥିଲି। ଯଦି ମୋର ପୂର୍ବର ସେହି ଅଭିଳାଷ ପୂରଣ ହେବାର ଥିବ, ତେବେ ତ ଭଲ କଥା। ଆପଣ ତ ମୋର ଅଭୀଷ୍ଟ ଅତିଥି।

ତାପରେ ସେହି ଆଶ୍ରମରେ ରହୁଥିବା ସମସ୍ତ ବ୍ରାହ୍ମଣଙ୍କୁ ଡକାଇ ରାଜା ଦୁହେଁ ବିଧିବତ୍ ବିବାହ ସଂସ୍କାର କାର୍ଯ୍ୟ ସମ୍ପନ୍ନ କଲେ ଏବଂ ଯଥାଯୋଗ୍ୟ ରୀତିରେ ବରକନ୍ୟାଙ୍କୁ ଆଭୂଷଣ ଇତ୍ୟାଦି ମଧ୍ୟ ପ୍ରଦାନ କଲେ। ତାପରେ ରାଜା ଅଶ୍ୱପତି ହର୍ଷିତ ମନରେ ନିଜ ରାଜଭବନକୁ ଫେରିଆସିଲେ। ସାବିତ୍ରୀ ପରି ସର୍ବଗୁଣସମ୍ପନ୍ନା ଭାର୍ଯ୍ୟାଟିଏ ପାଇ ସତ୍ୟବାନ ବହୁତ ଖୁସୀ ହେଲେ ଏବଂ ମନୋବାଞ୍ଛିତ ସ୍ୱାମୀ ପାଇ ସାବିତ୍ରୀ ମଧ୍ୟ ବହୁତ ଆନନ୍ଦିତ ହେଲେ। ପିତା ଅଶ୍ୱପତି ଚାଲିଯିବା ପରେ ସାବିତ୍ରୀ ସମସ୍ତ ମୂଲ୍ୟବାନ୍ ଆଭୂଷଣ ଦେହରୁ କାଢ଼ି ପକାଇଲେ ଏବଂ ବଲ୍କଳ ଓ ଗେରୁଆ ବସ୍ତ୍ର ଧାରଣ କଲେ। ତାଙ୍କର ସେବା, ଗୁଣ, ବିନୟ, ସଂଯମ ଓ ସମସ୍ତଙ୍କ ମନୋନୁକୂଳ କାର୍ଯ୍ୟ ଦେଖି ସମସ୍ତେ ଖୁସୀ ହେଲେ। ସେ ଶାଶୁଙ୍କର ଶାରୀରିକ ସେବା କରି ଏବଂ ତାଙ୍କୁ ବସ୍ତ୍ରାଭୂଷଣ ଯୋଗାଇ

ସନ୍ତୁଷ୍ଟ କରିଦେଲେ ଏବଂ ବାକ୍‌ସଂଯମପୂର୍ବକ ଦେବୋଚିତ ସେବାସମ୍ମାନ ଦ୍ୱାରା ଶ୍ୱଶୁରଙ୍କୁ ମଧ୍ୟ ସନ୍ତୁଷ୍ଟ କରିଦେଲେ। ଏହାଛଡା ସେ ମିଠାମିଠା କଥାରେ, କାର୍ଯ୍ୟ-କୁଶଳତାରେ ଏବଂ ଶାନ୍ତି ପ୍ରଦାନପୂର୍ବକ ସ୍ୱାମୀଙ୍କର ଏକାନ୍ତସେବା କରି ସତ୍ୟବାନଙ୍କୁ ବହୁତ ଆନନ୍ଦ ପ୍ରଦାନ କଲେ*। ଏହିରୂପେ ସାବିତ୍ରୀ ଆଶ୍ରମରେ ରହି ତପସ୍ୱିନୀ ପରି କାଳ କାଟିଲେ।

❋❋❋

## ସତ୍ୟବାନଙ୍କର ମୃତ୍ୟୁ ଏବଂ ସାବିତ୍ରୀଙ୍କ ପ୍ରୟାସରେ ତାଙ୍କର ପୁନର୍ଜୀବନ ଲାଭ

ଏହିପରି ଭାବରେ ସମୟ ଗଡ଼ି ଚ୍ଚଳିଲା। କାଳକ୍ରମେ ସତ୍ୟବାନଙ୍କ ମୃତ୍ୟୁଦିବସ ପାଖେଇ ଆସିଲା। ସାବିତ୍ରୀ ଗୋଟି ଗୋଟି କରି ଦିନ ଗଣୁଥାନ୍ତି; ନାରଦଙ୍କ ବାଣୀକୁ ସେ କଦାପି ଭୁଲିପାରୁ ନ ଥାନ୍ତି। ଯେତେବେଳେ ସେ ଜାଣିଲେ ଯେ ସତ୍ୟବାନଙ୍କ ମୃତ୍ୟୁ ଆଉ ମାତ୍ର ଚ୍ଚରିଦିନ ରହିଲା, ସେତେବେଳେ ସେ ତିନିଦିନ ପର୍ଯ୍ୟନ୍ତ ବ୍ରତ ପାଳନ କଲେ ଏବଂ ଦିନରାତି ସ୍ଥିର ଭାବରେ ବସିରହିଲେ। 'କାଲି ମୋ ପତିଦେବଙ୍କର ଦେହାନ୍ତ ହୋଇଯିବ' ଏହି ଚିନ୍ତାରେ ସେ ତୃତୀୟ ରାତିଟି ମଧ୍ୟ ବିତାଇଲେ। ଯେଉଁ ଦିନଟି ସତ୍ୟବାନଙ୍କ ପାଇଁ ଅନ୍ତିମ ଦିନ ଥିଲା, ସେଦିନ ସକାଳୁ ସୂର୍ଯ୍ୟଦେବ ଚ୍ଚରିହାତ ଉପରକୁ ଉଠୁ ଉଠୁ ସେ ନିଜର ସମସ୍ତ ଆହ୍ନିକ କୃତ୍ୟ ଶେଷ କରିଦେଲେ ଏବଂ ଅଗ୍ନିରେ ଆହୁତି ଦେଲେ। ତାପରେ ସମସ୍ତ ବ୍ରାହ୍ମଣ, ବୟୋବୃଦ୍ଧ ବ୍ୟକ୍ତି, ଶାଶୁ, ଶ୍ୱଶୁର ପ୍ରଭୃତିଙ୍କୁ ପ୍ରଣାମ କରି ସଂଯମପୂର୍ବକ ହାତ ଯୋଡ଼ି ଠିଆ ହୋଇଗଲେ। ସେହି ତପୋବନରେ ବାସ କରୁଥିବା ସମସ୍ତ ତପସ୍ୱୀ ତାଙ୍କୁ ସୌଭାଗ୍ୟବତୀ

---

* ଶ୍ୱଶ୍ରୂଂ ଶରୀରସତ୍କାରୈଃ ସର୍ବୈରାଚ୍ଛାଦନାଦିଭିଃ।
ଶ୍ୱଶୁରଂ ଦେବସତ୍କାରୈର୍ବାଚଃ ସଂଯମନେନ ଚ॥
ତଥୈବ ପ୍ରିୟବାଦେନ ନୈପୁଣେନ ଶମେନ ଚ।
ରହଶ୍ଚୈବୋପଚ୍ଚରେଣ ଭର୍ତ୍ତାରଂ ପର୍ଯ୍ୟତୋଷୟତ୍॥
(ମହାଭା. ବନ. ୨୯୪।୨୦, ୨୧)

ହେବାର ବା ଅବୈଧବ୍ୟ ସୂଚକ ଶୁଭ ଆଶୀର୍ବାଦ ଦେଲେ* ଏବଂ ସାବିତ୍ରୀ ସେହି ଆଶୀର୍ବାଦକୁ ମନେ ମନେ ଅଙ୍ଗୀକାର କଲେ । ଇତିମଧ୍ୟରେ ସତ୍ୟବାନ କାନ୍ଧରେ କୁରାଢ଼ି ପକାଇ ବଣକୁ କାଠ ଆଣିବାକୁ ବାହାରିଲେ । ତାଙ୍କୁ ଦେଖି ସାବିତ୍ରୀ କହିଲେ—"ତୁମେ ଏକୁଟିଆ ଯାଅ ନାହିଁ, ମୁଁ ମଧ୍ୟ ତୁମ ସଙ୍ଗରେ ଯିବି ।" ସତ୍ୟବାନ କହିଲେ—"ତୁମେ ପୂର୍ବରୁ କେବେ ବଣଜଙ୍ଗଲକୁ ଯାଇ ନାହଁ, ବଣଜଙ୍ଗଲର ରାସ୍ତା ଭାରି ଦୁର୍ଗମ । ତା'ଛଡ଼ା ତୁମେ ଉପବାସ କରି କରି ଦୁର୍ବଳ ହୋଇଗଲଣି; ତେଣୁ ତୁମେ କଣ ଏତେ ଦୁର୍ଗମ ରାସ୍ତାରେ ଚ୍ଛଲିପାରିବ ?" ସାବିତ୍ରୀ କହିଲେ—"ଉପବାସ କରି ମଧ୍ୟ ମୁଁ ଦୁର୍ବଳ ବା କ୍ଳାନ୍ତ ହୋଇଯାଇ ନାହିଁ; ତୁମ ସଙ୍ଗରେ ଯିବା ପାଇଁ ମୋ ମନରେ ବହୁତ ଉତ୍ସାହ ରହିଛି । ତେଣୁ ମନା କର ନାହିଁ ।" ସତ୍ୟବାନ କହିଲେ—"ତୁମ ମନରେ ଯଦି ଯିବାକୁ ଉତ୍ସାହ ଅଛି, ମୁଁ କାହିଁକି ମନା କରିବି ! କିନ୍ତୁ ଗୋଟିଏ କଥା—ତୁମକୁ ବାପାମାଆଙ୍କ ଠାରୁ ଆଜ୍ଞା ନେବାକୁ ପଡ଼ିବ ।"

ଏହା ଶୁଣି ସାବିତ୍ରୀ ଯାଇ ଶାଶୁଶ୍ୱଶୁରଙ୍କୁ ପ୍ରଣାମ କରି କହିଲେ—"ମୋ ସ୍ୱାମୀ ଫଳ, କାଠ ଇତ୍ୟାଦି ଆଣିବା ପାଇଁ ବଣକୁ ଯାଉଛନ୍ତି; ଯଦି ଆପଣମାନେ ଆଜ୍ଞା ଦେବେ, ମୁଁ ବି ତାଙ୍କ ସଙ୍ଗରେ ଯାଆନ୍ତି ।" ଦ୍ୟୁମତ୍‌ସେନ କହିଲେ—"ଯେଉଁ ଦିନୁ ଏହାର ପିତା କନ୍ୟାଦାନ କରିଦେଇଛନ୍ତି ଏବଂ ଯେଉଁ ଦିନୁ ଏ ସାବିତ୍ରୀ ଆମ ଘରକୁ ବୋହୂ ହୋଇ ଆସିଲାଣି, ସେବେଠାରୁ କେଉଁ ଦିନ ବି ଏ କିଛି ମାଗିନାହିଁ । ତେଣୁ ଆଜି ଏହାର ଇଚ୍ଛା ପୂରଣ କରିବା ଉଚିତ । ଆଚ୍ଛା ମାଆ ! ଯାଆ । ବାଟରେ ସତ୍ୟବାନର ଭଲମନ୍ଦ ଦେଖାଶୁଣା କରୁଥିବୁ ।" ଶାଶୁଶ୍ୱଶୁରଙ୍କର ଅନୁମତି

---

* ତତଃ ସର୍ବାନ୍ ଦ୍ୱିଜାନ୍ ବୃଦ୍ଧାନ୍ ଶ୍ୱଶ୍ରୂଂ ଶ୍ୱଶୁରମେବ ଚ ।
ଅଭିବାଦ୍ୟାନୁପୂର୍ବ୍ୟେଣ ପ୍ରାଞ୍ଜଳିର୍ନିୟତା ସ୍ଥିତା ॥
ଅବୈଧବ୍ୟାଶିଷସ୍ତେ ତୁ ସାବିତ୍ର୍ୟର୍ଥଂ ହିତାଃ ଶୁଭାଃ ।
ଉଚୁସ୍ତପସ୍ୱିନଃ ସର୍ବେ ତପୋବନନିବାସିନଃ ॥
(ମହାଭା. ବନ. ୨୯୬ । ୧୧, ୧୨)

ମିଳିଯିବାରୁ ଯଶସ୍ୱିନୀ ସାବିତ୍ରୀ ପତିଦେବଙ୍କ ସଙ୍ଗରେ ବନକୁ ଗ୍ଲଲେ। ଉପରକୁ ତ ସେ ହସିଲା ଭଳି ମନେ ହେଉଥିଲେ, କିନ୍ତୁ ତାଙ୍କ ହୃଦୟରେ ଜଳୁଥିଲା ଦାବାଗ୍ନି। ବନରେ ପହଞ୍ଚି ସତ୍ୟବାନ ପ୍ରଥମେ ଫଳ ତୋଳି ଆଣି ଟୋକେଇରେ ପୂରାଇଲେ, ତାପରେ କାଠ ହାଣିବାକୁ ଲାଗିଲେ। କାଠ ହାଣି ହାଣି ଥକିଯିବାରୁ ତାଙ୍କ ଦେହରୁ ଝାଳ ବୋହିଲା ଏବଂ ମୁଣ୍ଡବିନ୍ଧା ଆରମ୍ଭ ହୋଇଗଲା। କଷ୍ଟ ଅନୁଭବ ହେବାରୁ ସେ ସାବିତ୍ରୀଙ୍କ ପାଖକୁ ଯାଇ କହିଲେ—"ପ୍ରିୟେ! ଆଜି କାଠ ହାଣିବାର ପରିଶ୍ରମ ଫଳରେ ଭାରି ମୁଣ୍ଡ ବିନ୍ଧୁଛି ଏବଂ ସାରା ଶରୀରରେ ଓ ଛାତି ଭିତରେ ଜଳାପୋଡ଼ା ହେଲା ପରି ମନେ ହେଉଛି। ଲାଗୁଛି, ସତେ ଯେପରି ମୋ ମୁଣ୍ଡରେ କେହି ଜଣେ ବର୍ଚ୍ଛା ମାରୁଛି। କଲ୍ୟାଣୀ! ମୋର ଏବେ ଶୋଇବାକୁ ଇଚ୍ଛା ହେଉଛି; ବସି ରହିବାକୁ ମୋର ଆଉ ସାମର୍ଥ୍ୟ ନାହିଁ।"

ସ୍ୱାମୀଙ୍କ କଥା ଶୁଣି ସାବିତ୍ରୀ ବସି ପଡ଼ି ସ୍ୱାମୀଙ୍କ ମୁଣ୍ଡକୁ କୋଳରେ ରଖି ଧୀରେ ଧୀରେ ଆଉଁସିଲେ। ସେ ନାରଦଙ୍କ କଥା ମନେ ପକାଇ ସେହି ସମୟର ମୁହୂର୍ତ୍ତ, କ୍ଷଣ ଓ ଦିନ ବିଷୟରେ ଭାବିବାକୁ ଲାଗିଲେ। ଠିକ୍ ଏତିକି ବେଳେ ସେଠାରେ ଜଣେ କଳାରଙ୍ଗର ପୁରୁଷ ଆବିର୍ଭୂତ ହୋଇଗଲେ। ସେ ନାଲି ବସ୍ତ୍ର ପିନ୍ଧିଥିବାରୁ ମୂର୍ତ୍ତିମାନ ସୂର୍ଯ୍ୟଙ୍କ ପରି ଦିଶୁଥିଲେ। ତାଙ୍କର ଶରୀର ଥିଲା ଶ୍ୟାମଳ ଓ ସୁନ୍ଦର, ଆଖି ଲାଲ୍ ଲାଲ୍। ସେ ହାତରେ ଧରିଥିଲେ ଫାଶ। ସେ ଖୁବ୍ ଭୟଙ୍କର ମନେ ହେଉଥିଲେ। ସେ ସତ୍ୟବାନଙ୍କ ପାଖରେ ଛିଡା ହୋଇ ତାଙ୍କୁ ଗ୍ହୁଁଥିଲେ। ତାଙ୍କୁ ଦେଖିବାମାତ୍ରେ ସାବିତ୍ରୀ ଧୀରେ ଧୀରେ ସ୍ୱାମୀଙ୍କ ମୁଣ୍ଡକୁ କୋଳରୁ ତଳକୁ ଖସାଇ ଛିଡ଼ା ହୋଇଗଲେ। ତାଙ୍କ ହୃଦୟ ଥରଥର କମ୍ପିବାକୁ ଲାଗିଲା ଏବଂ ସେ ଅତ୍ୟନ୍ତ ଆର୍ତ୍ତଭାବରେ ହାତ ଯୋଡ଼ି ତାଙ୍କୁ କହିଲେ—"ମୁଁ ଜାଣିପାରୁଛି, ଆପଣ ନିଶ୍ଚେ କୌଣସି ଦେବତା; କାରଣ ଆପଣଙ୍କର ଏ ଶରୀର ମନୁଷ୍ୟ ଶରୀର ପରି ନୁହେଁ। ଯଦି କୌଣସି ଆପତ୍ତି ନ ଥାଏ, ତେବେ ଦୟାକରି ଆପଣଙ୍କର ପରିଚୟ ଦିଅନ୍ତୁ ଏବଂ ଏଠାକୁ ଆସିବାର ଅଭିପ୍ରାୟ ବ୍ୟକ୍ତ କରନ୍ତୁ।"

**ଯମରାଜ କହିଲେ**—ସାବିତ୍ରୀ! ତୁମେ ହେଉଛ ପତିବ୍ରତା ଓ

ଜଣେ ତପସ୍ୱିନୀ । ତେଣୁ ମୁଁ ତୁମ ସଙ୍ଗେ କଥାବାର୍ତ୍ତା କରି ପାରିବି । ତୁମେ ମୋତେ ଯମରାଜ ବୋଲି ଜାଣ* । ତୁମର ସ୍ୱାମୀ ଏହି ରାଜକୁମାର ସତ୍ୟବାନଙ୍କର ଆୟୁ ପୂରିଯାଇଛି, ତେଣୁ ମୁଁ ଏହାକୁ ଫାଶରେ ବାନ୍ଧି ନେଇଯିବାକୁ ଆସିଛି ।

**ସାବିତ୍ରୀ କହିଲେ**—ପ୍ରଭୁ ! ମୁଁ ତ ଶୁଣିଛି ଯେ, ମନୁଷ୍ୟଙ୍କୁ ନେବା ପାଇଁ ଆପଣଙ୍କ ଦୂତମାନେ ଆସିଥାନ୍ତି, କିନ୍ତୁ ଆପଣ ସ୍ୱୟଂ ଏଠାକୁ ଆସିଛନ୍ତି କିପରି ?

**ଯମରାଜ କହିଲେ**—ସତ୍ୟବାନ ହେଉଛନ୍ତି ଧର୍ମାତ୍ମା, ରୂପବାନ ଓ ଗୁଣର ସାଗର । ମୋ ଦୂତମାନଙ୍କ ଦ୍ୱାରା ଏହାଙ୍କୁ ନିଆଯିବା ଠିକ୍ ହେବ ନାହିଁ । ସେଥିପାଇଁ ମୁଁ ନିଜେ ଆସିଛି ।

ଏହା କହି ଯମରାଜ ସତ୍ୟବାନଙ୍କ ଶରୀରରୁ ଅଙ୍ଗୁଷ୍ଠମାତ୍ର ଆକାରର ଜୀବକୁ ବଳପୂର୍ବକ ବାନ୍ଧି ଟାଣିଆଣିଲେ ଏବଂ ତାକୁ ନେଇ ଦକ୍ଷିଣ ଦିଗକୁ ଗତି କଲେ । ଦୁଃଖାଭିଭୂତା ସାବିତ୍ରୀ ମଧ୍ୟ ତାଙ୍କ ପଛେ ପଛେ ଚାଲିଲେ । ଏହା ଦେଖି ଯମରାଜ କହିଲେ, "ସାବିତ୍ରୀ ! ତୁମେ ଫେରିଯାଅ ଓ ସ୍ୱାମୀଙ୍କର ଔର୍ଦ୍ଧ୍ୱଦୈହିକ ସଂସ୍କାର କର । ତୁମେ ପତିସେବା ଋଣରୁ ମୁକ୍ତ ହୋଇସାରିଛ ଏବଂ ଯେତିକି ବାଟ ପତିର ଅନୁଗମନ କରିବା କଥା, ସେତିକି ବାଟ ତୁମେ ଆସିସାରିଛ ।"

**ସାବିତ୍ରୀ କହିଲେ**—ମୋର ସ୍ୱାମୀଙ୍କୁ ଯେଉଁଠିକୁ ନିଆଯିବ ଅଥବା ଯେଉଁଠିକୁ ସେ ନିଜେ ଯିବେ, ମୁଁ ମଧ୍ୟ ସେଠାକୁ ଯିବା ଉଚିତ । ଏହା ହିଁ ସନାତନ ଧର୍ମ । ତପସ୍ୟା, ଗୁରୁଭକ୍ତି, ପତିପ୍ରେମ, ବ୍ରତାଚରଣ ଓ ଆପଣଙ୍କ କୃପାରୁ ମୋର ଗତି କଦାପି ଅବରୁଦ୍ଧ ହୋଇ ପାରିବ ନାହିଁ ᛘ ।

---

* ପତିବ୍ରତାସି ସାବିତ୍ରି ତଥୈବ ଚ ତପୋଽନ୍ୱିତାଃ ।
ଅତସ୍ତ୍ୱାମଭିଭାଷାମି ବିଦ୍ଧି ମାଂ ତ୍ୱଂ ଶୁଭେ ଯମମ୍ ॥
(ମହାଭା. ବନ. ୨୯୭ । ୧୨)

ᛘ ଯତ୍ର ମେ ନୀୟତେ ଭର୍ତ୍ତା ସ୍ୱୟଂ ବା ଯତ୍ର ଗଚ୍ଛତି ।
ମୟା ଚ ତତ୍ର ଗନ୍ତବ୍ୟମେଷ ଧର୍ମଃ ସନାତନଃ ॥

**ଯମରାଜ କହିଲେ**—ସାବିତ୍ରୀ ! ତୁମର ଶବ୍ଦାବଳୀ ଏବଂ ସ୍ୱର ଓ ବ୍ୟଞ୍ଜନଯୁକ୍ତ ଯୁକ୍ତିସଂଗତ କଥା ଶୁଣି ମୁଁ ବହୁତ ପ୍ରସନ୍ନ । ତୁମେ ସତ୍ୟବାନଙ୍କ ଜୀବନ ଛଡ଼ା ଅନ୍ୟ ଯାହା କିଛି ମାଗିବାକୁ ଚାହୁଁଛ, ମାଗ । ମୁଁ ତୁମକୁ ବର ଦେବାକୁ ପ୍ରସ୍ତୁତ ।

**ସାବିତ୍ରୀ କହିଲେ**—ମୋ ଶ୍ୱଶୁର ରାଜ୍ୟଭ୍ରଷ୍ଟ ହୋଇ ବନରେ କାଳ କାଟୁଛନ୍ତି ଏବଂ ତାଙ୍କର ଚକ୍ଷୁ ମଧ୍ୟ ନଷ୍ଟ ହୋଇଯାଇଛି । ତେଣୁ ଆପଣଙ୍କ କୃପାରୁ ତାଙ୍କୁ ଚକ୍ଷୁ ମିଳିଯାଉ, ସେ ବଳବାନ ହୋଇଯାଆନ୍ତୁ ଏବଂ ଅଗ୍ନି ଓ ସୂର୍ଯ୍ୟଙ୍କ ସଦୃଶ ତେଜସ୍ୱୀ ହୋଇଯାଆନ୍ତୁ ।

**ଯମରାଜ କହିଲେ**—ତଥାସ୍ତୁ ! ତୁମେ ଯାହା ମାଗିଲ, ମୁଁ ତାହା ପ୍ରଦାନ କରୁଛି । ଏତିକି ବାଟରୁ ଫେରିଗଲେ, ତୁମକୁ ଆଉ ଶ୍ରମକଷ୍ଟ ହେବ ନାହିଁ ।

**ସାବିତ୍ରୀ କହିଲେ**—ପତିଦେବଙ୍କ ସମୀପରେ ରହି ମୋତେ କଣ ଶ୍ରମ ବାଧି ପାରିବ ? ଯେଉଁଠି ମୋ ପ୍ରାଣନାଥ ରହିବେ, ସେହି ସ୍ଥାନ ହିଁ ହେବ ମୋ ପାଇଁ ନିଶ୍ଚଳ ଆଶ୍ରମ । ଦେବେଶ୍ୱର ! ଯେଉଁଠାକୁ ଆପଣ ମୋ ସ୍ୱାମୀଙ୍କୁ ନେଇ ଯାଉଛନ୍ତି, ସେଠାକୁ ମୁଁ ମଧ୍ୟ ଯିବି । ଏହାଛଡ଼ା ମୋର ଆହୁରି ଗୋଟିଏ କଥା ଶୁଣନ୍ତୁ । ସତ୍‌ପୁରୁଷଙ୍କ ସାନ୍ନିଧ୍ୟ ଥରେମାତ୍ର ମିଳିଯିବା ମଧ୍ୟ ବହୁତ ବଡ଼ ଅଭୀଷ୍ଟର କଥା । ତା ଠାରୁ ଆହୁରି ବଡ଼ କଥା ହେଲା ତାଙ୍କ ସଙ୍ଗେ ସଦ୍‌ଭାବ ବା ପ୍ରୀତି ହୋଇଯିବା । ସନ୍ଥସମାଗମ କଦାପି ନିଷ୍ଫଳ ଯାଏ ନାହିଁ, ତେଣୁ ସର୍ବଦା ସତ୍‌ପୁରୁଷଙ୍କ ସାନ୍ନିଧ୍ୟରେ ହିଁ ରହିବା ଆବଶ୍ୟକ* ।

---

ତପସା ଗୁରୁଭକ୍ତ୍ୟା ଚ ଭର୍ତ୍ତୁଃ ସ୍ନେହାଦ୍ ବ୍ରତେନ ଚ ।
ତବ ଚୈବ ପ୍ରସାଦେନ ନ ମେ ପ୍ରତିହତା ଗତିଃ ॥
(ମହାଭା. ବନ. ୨୯୭ । ୨୧, ୨୨)

* ଶ୍ରମଃ କୁତୋ ଭର୍ତ୍ତୃସମୀପତୋ ହି ମେ
ଯତୋ ହି ଭର୍ତ୍ତା ମମ ସା ଗତିର୍ଧ୍ରୁବା ।
ଯତଃ ପତିଂ ନେଷ୍ୟସି ତତ୍ର ମେ ଗତିଃ
ସୁରେଶ ଭୂୟଶ୍ଚ ବଚ୍ଚେ ନିବୋଧ ମେ ॥

**ଯମରାଜ କହିଲେ**—ସାବିତ୍ରୀ ! ତୁମେ ଯେଉଁ ହିତକର କଥା କହିଲ, ତାହା ମୋତେ ବହୁତ ଭଲ ଲାଗିଲା । ଏଭଳି କଥା ବିଦ୍ୱାନଙ୍କର ବୁଦ୍ଧିକୁ ମଧ୍ୟ ବିକଶିତ କରି ଦେବ । ତେଣୁ ସତ୍ୟବାନଙ୍କ ଜୀବନ ଛଡ଼ା ଆଉ କିଛି ଗୋଟାଏ ବର ମାଗ ।

**ସାବିତ୍ରୀ କହିଲେ**—ମୋର ମତିମାନ୍ ଶ୍ୱଶୁରଙ୍କର ଯେଉଁ ରାଜ୍ୟ ଗ୍ୱଲିଯାଇଛି, ତାହା ତାଙ୍କୁ ପୁନଃ ଆପେ ଆପେ ମିଳିଯାଉ ଏବଂ ସେ ଧର୍ମ ପରିତ୍ୟାଗ ନ କରନ୍ତୁ । ଏହା ମୁଁ ଦ୍ୱିତୀୟ ବର ରୂପେ ମାଗୁଛି ।

**ଯମରାଜ କହିଲେ**—ରାଜା ଦ୍ୟୁମତ୍ସେନ ଖୁବ୍ ଶୀଘ୍ର ତାଙ୍କର ରାଜ୍ୟ ଫେରିପାଇବେ ଏବଂ ସେ ତାଙ୍କର ଧର୍ମ ତ୍ୟାଗ କରିବେ ନାହିଁ । ଏବେ ତ ତୁମର ଇଚ୍ଛା ପୂରଣ ହୋଇଗଲା ନା ? ଏଣିକି ଆଉ ତୁମେ ବୃଥାରେ ଶ୍ରମକଷ୍ଟ ନ ଭୋଗି ଫେରିଯାଅ ।

**ସାବିତ୍ରୀ କହିଲେ**—ଆପଣ ସମସ୍ତ ପ୍ରଜାଙ୍କୁ ନିୟମପୂର୍ବକ ସଂଯମ (ଶାସନ) କରନ୍ତି ଏବଂ ସେମାନଙ୍କୁ ନିୟମନ କରି ଅଭୀଷ୍ଟ ଫଳ ପ୍ରଦାନ କରନ୍ତି, ସେଥିପାଇଁ ଆପଣ 'ଯମ' ନାମରେ ବିଖ୍ୟାତ ହୋଇଛନ୍ତି । ତେଣୁ ମୁଁ ଯାହା କହୁଛି, ସେ କଥା ଶୁଣନ୍ତୁ । ମନ, ବଚନ ଓ କର୍ମରେ ସମସ୍ତ ପ୍ରାଣୀଙ୍କ ପ୍ରତି ଅଦ୍ରୋହ, ସମସ୍ତଙ୍କ ପ୍ରତି କୃପା କରିବା ଓ ଦାନ ଦେବା—ଏହା ହେଉଛି ସତ୍‌ପୁରୁଷଙ୍କର ସନାତନ ଧର୍ମ ଏବଂ ଏହି ଗୁଣ ପ୍ରାୟ ସମସ୍ତଙ୍କ ଠାରେ ଦେଖାଯାଏ; ସମସ୍ତେ ନିଜ ନିଜ ସାମର୍ଥ୍ୟ ଅନୁସାରେ କିଛି କୋମଳ ବ୍ୟବହାର କରିଥାନ୍ତି । କିନ୍ତୁ ଯେଉଁମାନେ ସତ୍‌ପୁରୁଷ, ସେମାନେ ତ ତାଙ୍କ ପାଖକୁ ଆସିଥିବା ଶତ୍ରୁ ପ୍ରତି ମଧ୍ୟ ଦୟା କରିଥାନ୍ତି* ।

---

ସତାଂ ସକୃତ୍‌ସଙ୍ଗତମୀପ୍ସିତଂ ପରଂ
ତତଃ ପରଂ ମିତ୍ରମିତି ପ୍ରଚକ୍ଷତେ ।
ନ ଗ୍ୱଫଳଂ ସତ୍‌ପୁରୁଷେଣ ସଙ୍ଗତଂ
ତତଃ ସତାଂ ସନ୍ନିବସେତ୍ ସମାଗମେ ॥
(ମହାଭା. ବନ. ୨୯୭ । ୨୯, ୩୦)

* ପ୍ରଜାସ୍ତ୍ୱୟୈତା ନିୟମେନ ସଂଯତା
ନିୟମ୍ୟ ଚୈତା ନୟସେ ନିକାମୟା ।

**ଯମରାଜ କହିଲେ**—କଲ୍ୟାଣୀ ! ତୃଷାର୍ତ୍ତ ମଣିଷକୁ ଜଳ ଯେପରି ଆନନ୍ଦ ଦେଇଥାଏ, ତୁମର କଥା ମୋତେ ସେହିପରି ଲାଗୁଛି । ତେଣୁ ସତ୍ୟବାନଙ୍କ ଜୀବନ ଛଡ଼ା ତୁମେ ଆଉ ଗୋଟିଏ ଅଭୀଷ୍ଟ ବର ମାଗ ।

**ସାବିତ୍ରୀ କହିଲେ**—ମୋ ପିତା ଅଶ୍ୱପତି ପୁତ୍ରହୀନ । ତାଙ୍କର ଶହେ କୁଳବୃଦ୍ଧିକାରୀ ଔରସ ପୁତ୍ର ହୁଅନ୍ତୁ । ଏହା ମୁଁ ତୃତୀୟ ବରରୂପେ ମାଗୁଛି ।

**ଯମରାଜ କହିଲେ**—ରାଜକୁମାରୀ ! ତୁମ ପିତାଙ୍କର କୁଳ-ବର୍ଦ୍ଧନକାରୀ ଶହେ ଔରସ ପୁତ୍ର ହେବେ । ଏଥର ତ ତୁମର ଇଚ୍ଛା ପୂର୍ଣ୍ଣ ହୋଇଗଲା ! ଏଣିକି ତୁମେ ଫେରିଯାଅ, ବହୁତ ଦୂର ବାଟ ଆସିଗଲଣି ।

**ସାବିତ୍ରୀ କହିଲେ**—ପତିଦେବଙ୍କ ସାନ୍ନିଧ୍ୟ ମିଳୁଥିବାରୁ ମୋତେ ବାଟ ଆଦୌ ଦୂର ଜଣାପଡୁ ନାହିଁ । ତେଣୁ ମୁଁ ଯାହା କହୁଛି, ସେ କଥା ଦୟାକରି ଶୁଣନ୍ତୁ । ଆପଣ ବିବସ୍ୱାନ (ସୂର୍ଯ୍ୟ)ଙ୍କର ଜଣେ ପରାକ୍ରମୀ ପୁତ୍ର; ସେହି ଦୃଷ୍ଟିରୁ ଜ୍ଞାନୀଜନ ଆପଣଙ୍କୁ 'ବୈବସ୍ୱତ' ବୋଲି କହିଥାନ୍ତି । ଆପଣ ଶତ୍ରୁ-ମିତ୍ର ଭେଦଭାବ ନ କରି ସମସ୍ତଙ୍କୁ ସମାନଭାବରେ ନ୍ୟାୟ ପ୍ରଦାନ କରିଥାନ୍ତି । ସେଥିପାଇଁ ସକଳ ପ୍ରଜା ଧର୍ମ ଆଚରଣ କରନ୍ତି ଏବଂ ଆପଣ 'ଧର୍ମରାଜ' ନାମରେ ବିଖ୍ୟାତ ହୋଇଛନ୍ତି । ଏହାଛଡ଼ା ବ୍ୟକ୍ତି ସତ୍‌ପୁରୁଷଙ୍କ ଉପରେ ଯେତିକି ବିଶ୍ୱାସ କରିଥାଏ, ନିଜ ଉପରେ ମଧ୍ୟ ସେତିକି ବିଶ୍ୱାସ କରି ନ ଥାଏ । ସେ ସତ୍‌ପୁରୁଷଙ୍କ ସଙ୍ଗେ ପ୍ରୀତିଭାବ ରଖିବାକୁ ଚାହିଁଥାଏ । ପ୍ରକୃତରେ ସୌହାର୍ଦ୍ଦ୍ୟ ହେତୁ ପ୍ରାଣୀମାନଙ୍କର ପରସ୍ପର

---

ତତୋ ଯମସ୍ତ୍ୱଂ ତବ ଦେବ ବିଶ୍ରୁତଂ
ନିବୋଧ ଚେମାଂ ଗିରମୀରିତାଂ ମୟା ॥
ଅଦ୍ରୋହଃ ସର୍ବଭୂତେଷୁ କର୍ମଣା ମନସା ଗିରା ।
ଅନୁଗ୍ରହଶ୍ଚ ଦାନଂ ଚ ସତାଂ ଧର୍ମଃ ସନାତନଃ ॥
ଏବଂ ପ୍ରାୟଶ୍ଚ ଲୋକୋଽୟଂ ମନୁଷ୍ୟାଃ ଶକ୍ତି ପେଶଲାଃ ।
ସନ୍ତସ୍ତ୍ୱେବାପ୍ୟମିତ୍ରେଷୁ ଦୟାଂ ପ୍ରାପ୍ତେଷୁ କୁର୍ବତେ ॥
(ମହାଭା. ବନ. ୨୯୭ । ୩୪-୩୬)

ପ୍ରତି ବିଶ୍ୱାସ ଜନ୍ମିଥାଏ। ସାଧୁସନ୍ଥଙ୍କ ଠାରେ ଏହି ସୌହାର୍ଦ୍ଦ୍ୟ ଥିବାରୁ ହିଁ ସେମାନଙ୍କୁ ଲୋକମାନେ ଅଧିକ ବିଶ୍ୱାସ କରିଥାନ୍ତି।*

**ଯମରାଜ କହିଲେ**—ତୁମେ ଯେଉଁ କଥା କହିଲ, ମୁଁ ତୁମ ବ୍ୟତୀତ ଆଉ କାହାରି ମୁହଁରୁ ଏଭଳି କଥା ଶୁଣି ନାହିଁ। ଏଥିପାଇଁ ମୁଁ ତୁମ ଉପରେ ବହୁତ ପ୍ରସନ୍ନ। ତୁମେ ଏ ସତ୍ୟବାନଙ୍କ ଜୀବନ ଛଡ଼ା ଆଉ ଗୋଟିଏ ବର ମାଗି ଏଠାରୁ ଫେରିଯାଅ।

**ସାବିତ୍ରୀ କହିଲେ**—ମୋଠାରୁ ସତ୍ୟବାନଙ୍କ ଔରସରେ କୁଳ-ବର୍ଦ୍ଧନକାରୀ, ବଳବାନ୍ ଓ ପରାକ୍ରମୀ ଶହେ ପୁତ୍ର ହୁଅନ୍ତୁ। ଏହା ମୁଁ ଚତୁର୍ଥ ବରରୂପେ ମାଗୁଛି।

**ଯମରାଜ କହିଲେ**—ହେ ଅବଳା ! ତୁମର ଶହେ ବଳବାନ୍ ଓ ପରାକ୍ରମୀ ପୁତ୍ର ହେବେ ଏବଂ ସେମାନଙ୍କୁ ପାଇ ତୁମେ ବହୁତ ଆନନ୍ଦ ଅନୁଭବ କରିବ। ରାଜକୁମାରୀ ! ଏଥର ତୁମେ ଫେରିଯାଅ। ତୁମକୁ ଆଉ ଅଧିକ କଷ୍ଟ ନ ହେଉ। ବହୁତ ଦୂର ବାଟ ଆସିଗଲଣି।

**ସାବିତ୍ରୀ କହିଲେ**—ସତ୍‌ପୁରୁଷ ବା ସନ୍ଥଜନଙ୍କ ଚିତ୍ତବୃତ୍ତି ନିରନ୍ତର ଧର୍ମରେ ହିଁ ପ୍ରତିଷ୍ଠିତ ରହିଥାଏ, ସେ କଦାପି ଦୁଃଖିତ ବା ବ୍ୟଥିତ ହୋଇ ନ ଥାନ୍ତି। ସତ୍‌ପୁରୁଷଙ୍କ ସଙ୍ଗେ ସତ୍‌ପୁରୁଷଙ୍କର ଯେଉଁ ମିଳନ ହୁଏ, ତାହା କଦାପି ନିଷ୍ଫଳ ଯାଏ ନାହିଁ। ସନ୍ଥଜନଙ୍କ ପ୍ରତି ଅନ୍ୟ ସନ୍ଥଜନଙ୍କର ଭୟ ମଧ୍ୟ ନ ଥାଏ। ସେମାନେ ସତ୍ୟର ପ୍ରଭାବରେ ସୂର୍ଯ୍ୟଙ୍କୁ ମଧ୍ୟ ନିଜ

---

* ବିବସ୍ୱତସ୍ତ୍ୱଂ ତନୟଃ ପ୍ରତାପବାଂ-
ସ୍ତତୋ ହି ବୈବସ୍ୱତ ଉଚ୍ୟସେ ବୁଧୈଃ।
ସମେନ ଧର୍ମେଣ ଚରନ୍ତି ତାଃ ପ୍ରଜା-
ସ୍ତତସ୍ତବେହେଶ୍ୱର ଧର୍ମରାଜତା॥
ଆତ୍ମନ୍ୟପି ନ ବିଶ୍ୱାସସ୍ତଥା ଭବତି ସତ୍ସୁ ଯଃ।
ତସ୍ମାତ୍ ସତ୍ସୁ ବିଶେଷେଣ ସର୍ବଃ ପ୍ରଣୟମିଚ୍ଛତି॥
ସୌହୃଦାତ୍ ସର୍ବଭୂତାନାଂ ବିଶ୍ୱାସୋ ନାମ ଜାୟତେ।
ତସ୍ମାତ୍ ସତ୍ସୁ ବିଶେଷେଣ ବିଶ୍ୱାସଂ କୁରୁତେ ଜନଃ॥
(ମହାଭା. ବନ. ୨୯୭ । ୪୧-୪୩)

ପାଖକୁ ଡାକି ଆଣି ପାରନ୍ତି, ସେମାନେ ଆପଣା ତପ ପ୍ରଭାବରେ ପୃଥିବୀକୁ ଧାରଣ କରିଥାନ୍ତି। ସଜ୍ଜନ ହିଁ ଅତୀତ ଓ ଭବିଷ୍ୟତର ଆଧାର। ତାଙ୍କ ସାନ୍ନିଧ୍ୟରେ ରହି ସତ୍‌ପୁରୁଷଙ୍କୁ କଦାପି ଦୁଃଖ ହୁଏ ନାହିଁ। 'ଅମୁକ ସନାତନ ସଦାଗ୍ଭର ସତ୍‌ପୁରୁଷମାନେ ପାଳନ କରିଆସିଛନ୍ତି' ଏଭଳି ବୁଝି ସଜ୍ଜନ ପରୋପକାର କରିଥାନ୍ତି ଏବଂ ପ୍ରତ୍ୟୁପକାର ପାଇବା ଦିଗକୁ ଆଦୌ ଦୃଷ୍ଟି ଦିଅନ୍ତି ନାହିଁ*।

**ଯମରାଜ କହିଲେ**—ହେ ପତିବ୍ରତା ! ତୁମେ ମୋ ମନକୁ ପ୍ରିୟ ଲାଗିଲା ଭଳି କଥା ଯେତିକି ଯେତିକି ଶୁଣାଇ ଗ୍ଭଲିଛ, ତୁମ ପ୍ରତି ମୋ ଶ୍ରଦ୍ଧାଭାବ ସେତିକି ସେତିକି ବଢ଼ି ବଢ଼ି ଗ୍ଭଲିଛି। ଏଥର ତୁମେ ମୋତେ କିଛି ଗୋଟିଏ ଅନୁପମ ବର ମାଗ।

**ସାବିତ୍ରୀ କହିଲେ**—ହେ ମାନଦ ! ଆପଣ ମୋତେ ପୁତ୍ରପ୍ରାପ୍ତି ହେବାର ବର ଦେଇଛନ୍ତି; କିନ୍ତୁ ତାହା ତ ଦାମ୍ପତ୍ୟଧର୍ମ ବିନା ପୂର୍ଣ୍ଣ ହେବା ସମ୍ଭବ ନୁହେଁ ! ତେଣୁ ମୁଁ ଏହି ବର ମାଗୁଛି ଯେ ଇଏ (ସତ୍ୟବାନ) ଜୀବିତ ହୋଇଯାନ୍ତୁ। ଏହା ହେଲେ ଯାଇ ଆପଣଙ୍କର ବଚନ ସତ୍ୟ ହେବ। ସ୍ୱାମୀଙ୍କ ବିନା ମୁଁ ତ ମୃତ୍ୟୁମୁଖରେ ପଡ଼ିଛି ବୋଲି ଜାଣନ୍ତୁ। ସ୍ୱାମୀଙ୍କ ବିନା ମୋତେ ଯେତେ ଯାହା ସୁଖ ମିଳିଲେ ବି ମୋର ସେଥିପ୍ରତି ଟିକିଏ ହେଲେ ଲାଳସା ନାହିଁ। ସ୍ୱାମୀଙ୍କ ବିନା ମୁଁ ସ୍ୱର୍ଗ ମଧ୍ୟ ଗ୍ଭହେଁନା। ସ୍ୱାମୀଙ୍କ ବିନା ମୋତେ ଲକ୍ଷ୍ମୀ ମିଳିଗଲେ ବି ମୋର ତାହା ଲୋଡ଼ା ନାହିଁ, ଏପରି କି ସ୍ୱାମୀଙ୍କ ବିନା ମୁଁ ବଞ୍ଚି ରହିବାକୁ ମଧ୍ୟ

---

* ସତାଂ ସଦା ଶାଶ୍ୱତଧର୍ମବୃତ୍ତିଃ ସନ୍ତୋ ନ ସୀଦନ୍ତି ନ ଚ ବ୍ୟଥନ୍ତି।
ସତାଂ ସଦ୍ଭିର୍ନାଫଳଃ ସଙ୍ଗମୋଽସ୍ତି ସଦ୍ଭ୍ୟୋ ଭୟଂ ନାନୁବର୍ତ୍ତନ୍ତି ସନ୍ତଃ॥
ସନ୍ତୋ ହି ସତ୍ୟେନ ନୟନ୍ତି ସୂର୍ଯ୍ୟଂ ସନ୍ତୋ ଭୂମିଂ ତପସା ଧାରୟନ୍ତି।
ସନ୍ତୋ ଗତିର୍ଭୂତଭବ୍ୟସ୍ୟ ରାଜନ୍ ସତାଂ ମଧ୍ୟେ ନାବସୀଦନ୍ତି ସନ୍ତଃ॥
ଆର୍ଯ୍ୟଜୁଷ୍ଟମିଦଂ ବୃତ୍ତମିତି ବିଜ୍ଞାୟ ଶାଶ୍ୱତମ୍।
ସନ୍ତଃ ପରାର୍ଥଂ କୁର୍ବାଣା ନାବେକ୍ଷନ୍ତି ପରସ୍ପରମ୍॥
(ମହାଭା. ବନ. ୨୯୭।୪୭-୪୯)

ଗ୍ରହେଁନା*। ଆପଣ ତ ମୋତେ ଶହେ ପୁତ୍ର ଲାଭ କରିବାର ବର ଦେଇଛନ୍ତି, ପୁଣି ମୋର ସ୍ୱାମୀଙ୍କୁ କିପରି ନେଇ ଯାଉଛନ୍ତି ! ଇଏ ଜୀବିତ ହେଲେ ହିଁ ତ ଆପଣଙ୍କ ବଚନ ସତ୍ୟ ହେବ !!

ଏକଥା ଶୁଣି ସୂର୍ଯ୍ୟପୁତ୍ର ଯମ ବହୁତ ପ୍ରସନ୍ନ ହେଲେ ଏବଂ 'ତଥାସ୍ତୁ' କହି ସତ୍ୟବାନଙ୍କୁ ପାଶମୁକ୍ତ କରିଦେଲେ। ଏହାପରେ ସେ ସାବିତ୍ରୀଙ୍କୁ କହିଲେ—''ହେ କୁଳନନ୍ଦିନୀ କଲ୍ୟାଣୀ ! ତୁମ ସ୍ୱାମୀଙ୍କୁ ନେଇଯାଅ; ମୁଁ ତୁମ ସ୍ୱାମୀଙ୍କୁ ଛାଡ଼ିଦେଲି। ଏଣିକି ଏ ସମ୍ପୂର୍ଣ୍ଣ ରୋଗମୁକ୍ତ ହୋଇଯିବେ। ଏହାଙ୍କର ସମସ୍ତ ମନୋରଥ ପୂର୍ଣ୍ଣ ହେବ। ଏ ତୁମ ସଙ୍ଗରେ ଚ୍ରିଶହ ବର୍ଷ ପର୍ଯ୍ୟନ୍ତ ଜୀବିତ ରହିବେ ଏବଂ ଧର୍ମପୂର୍ବକ ଯଜ୍ଞାନୁଷ୍ଠାନ କରି ଜଗତରେ ଆପଣା କୀର୍ତ୍ତି ବିସ୍ତାର କରିବେ। ଏହାଙ୍କ ଔରସରେ ତୁମ ଗର୍ଭରୁ ଶହେ ପୁତ୍ର ଜାତ ହେବେ।'' ସାବିତ୍ରୀଙ୍କୁ ଏଭଳି ବର ଦେଇ ଏବଂ ସତ୍ୟବାନଙ୍କୁ ଛାଡ଼ିଦେଇ ପରମ ପ୍ରତାପୀ ଧର୍ମରାଜ ତାଙ୍କର ସ୍ୱଧାମକୁ ଫେରିଗଲେ।

ଯମରାଜ ଚ୍ରାଲିଯିବା ପରେ ସ୍ୱାମୀଙ୍କୁ ପାଇ ସାବିତ୍ରୀ ପୂର୍ବର ସେହି ସ୍ଥାନକୁ ଫେରିଆସିଲେ, ଯେଉଁଠି ସତ୍ୟବାନଙ୍କ ଶବ ପଡ଼ିଥିଲା। ସେ ତଳେ ଶୋଇଥିବା ସ୍ୱାମୀଙ୍କ ପାଖରେ ବସିଗଲେ ଏବଂ ତାଙ୍କ ମୁଣ୍ଡକୁ ଉଠାଇ ନେଇ କୋଳରେ ରଖିଲେ। କିଛିକ୍ଷଣ ମଧ୍ୟରେ ସତ୍ୟବାନଙ୍କ ଦେହରେ ଚେତନା ଆସିଲା। ସେ ସାବିତ୍ରୀ ଆଡ଼କୁ ବାରମ୍ବାର ପ୍ରେମପୂର୍ବକ ଚ୍ରାହିଁ ଏଭଳି କଥାବାର୍ତ୍ତା କଲେ, ଯେପରି କି ବହୁ ଦିନ ପରେ ବିଦେଶରୁ ଫେରି ତାଙ୍କ ସଙ୍ଗେ ପ୍ରଥମେ ଭେଟୁଛନ୍ତି। ସେ କହିଲେ—''ମୁଁ ବହୁତ ବେଳୁ ଶୋଇଲିଣି; ତୁମେ ମୋତେ ଉଠାଇଲ ନାହିଁ କାହିଁକି ? ଆଚ୍ଛା, ସେ କାଳିଆ ପୁରୁଷ ଜଣକ କିଏ ଏଠାକୁ ଆସିଥିଲା ? ସେ ତ ମୋତେ

---

* ନ କାମୟେ ଭର୍ତ୍ତୃବିନାକୃତା ସୁଖଂ
ନ କାମୟେ ଭର୍ତ୍ତୃବିନାକୃତା ଦିବମ୍।
ନ କାମୟେ ଭର୍ତ୍ତୃବିନାକୃତା ଶ୍ରିୟଂ
ନ ଭର୍ତ୍ତୃହୀନା ବ୍ୟବସାମି ଜୀବିତୁମ୍॥
(ମହାଭା. ବନ. ୨୯୭। ୫୩)

ଟାଣି ଟାଣି ନେଇଯାଉଥିଲା ?'' ସାବିତ୍ରୀ କହିଲେ, ''ହେ ପୁରୁଷପ୍ରବର ! ଆପଣ ବହୁତ ବେଳୁ ମୋ କୋଳରେ ଶୋଇଲେଣି । ସେ କୃଷ୍ଣକାୟ ପୁରୁଷ ଥିଲେ ପ୍ରଜାମାନଙ୍କର ନିୟନ୍ତ୍ରଣକାରୀ ଦେବଶ୍ରେଷ୍ଠ ଯମରାଜ । ଏବେ ସେ ତାଙ୍କ ସ୍ୱଧାମକୁ ବାହୁଡ଼ି ଗଲେଣି । ଏଣେ ଦେଖନ୍ତୁ, ସୂର୍ଯ୍ୟ ଅସ୍ତ ହୋଇଗଲେଣି ଏବଂ ଧୀରେ ଧୀରେ ରାତି ମାଡ଼ିଆସୁଛି । ତେଣୁ ଚାଲନ୍ତୁ ପଳାଇବା । ଏସବୁ କଥା ମୁଁ କାଲି କହିବି । ଆପଣ ଉଠି ଆଗେ ଯାଇ ପିତାମାତାଙ୍କୁ ଦର୍ଶନ କରନ୍ତୁ ।'' ସତ୍ୟବାନ କହିଲେ, ''ହଁ, ଠିକ୍ କଥା । ଚାଲ, ଏବେ ଆଉ ମୋ ମୁଣ୍ଡ ବିନ୍ଧୁ ନାହିଁ କି ମୋର ଅନ୍ୟ କୌଣସି ଅଙ୍ଗରେ କିଛି କଷ୍ଟ ନାହିଁ । ମୁଁ ବର୍ତ୍ତମାନ ସୁସ୍ଥ ହୋଇଯାଇଛି । ମୁଁ ଶୀଘ୍ର ଯାଇ ମୋ ବୃଦ୍ଧ ପିତାମାତାଙ୍କୁ ଦର୍ଶନ କରିବାକୁ ଚାହେଁ । ପ୍ରିୟେ ! ମୁଁ ଆଗରୁ କୌଣସି ଦିନ ବି ଆଶ୍ରମକୁ ଏତେ ବିଳମ୍ବରେ ଫେରି ନ ଥିଲି । ସନ୍ଧ୍ୟା ନ ହେଉଣୁ ମୋ ମାଆ ମୋତେ ଘରୁ ବାହାରକୁ ଛାଡ଼ିଦିଅନ୍ତି ନାହିଁ । ଦିନରେ ବି ମୁଁ ଆଶ୍ରମ ବାହାରକୁ କୌଣସି ସ୍ଥାନକୁ ଯାଇଥିଲେ ବାପାମାଆ ମୋ ଚିନ୍ତାରେ ବ୍ୟସ୍ତ ହୁଅନ୍ତି ଏବଂ ଅଧୀର ହୋଇ ଆଶ୍ରମବାସୀଙ୍କ ସଙ୍ଗରେ ମୋତେ ଖୋଜିବାକୁ ବାହାରି ପଡ଼ନ୍ତି । ତେଣୁ ହେ କଲ୍ୟାଣୀ ! ଏବେ ମୋତେ ମୋର ନେତ୍ରହୀନ ପିତା ଓ ତାଙ୍କ ସେବାରେ ତତ୍ପର ଥିବା ମୋର ଦୁର୍ବଳ ମାତାଙ୍କ ବିଷୟରେ ଚିନ୍ତା ହେଉଛି; ନିଜ ଶରୀର କଥା ସେତେ ଚିନ୍ତା ନାହିଁ । ମୋର ପରମ ପୂଜ୍ୟ ପବିତ୍ରତମ ପିତାମାତା ମୋ ପାଇଁ ଆଜି କେତେ ଚିନ୍ତିତ ଓ ସନ୍ତାପିତ ହେଉଥିବେ ! ମୋର ପିତାମାତା ଯେପର୍ଯ୍ୟନ୍ତ ଜୀବିତ ଅଛନ୍ତି, ମୁଁ ବି ସେପର୍ଯ୍ୟନ୍ତ ଜୀବନ ଧାରଣ କରିବି ।

ସ୍ୱାମୀଙ୍କ କଥା ଶୁଣି ସାବିତ୍ରୀ ଠିଆ ହୋଇ ପଡ଼ିଲେ । ସେ ସତ୍ୟବାନଙ୍କୁ ଉଠାଇଲେ ଏବଂ ନିଜ ବାଆଁ କାନ୍ଧରେ ତାଙ୍କ ହାତ ପକାଇ ଓ ତାଙ୍କ ଅଣ୍ଟାକୁ ଡାହାଣ ହାତରେ ଧରି ତାଙ୍କୁ ନେଇ ଚାଲିଲେ । ସତ୍ୟବାନ କହିଲେ—''ପ୍ରିୟେ ! ଏ ରାସ୍ତାରେ ବାରମ୍ବାର ଯିବାଆସିବା କରିବାର ଅଭ୍ୟାସ ଥିବାରୁ ମୁଁ ଏ ରାସ୍ତା ସହିତ ଭଲଭାବରେ ପରିଚିତ । ଗଛପତ୍ର ଗହଳର ମଝି ମଝିରେ ଚନ୍ଦ୍ରକିରଣ ବି ପଡ଼ିଲାଣି । ମୁଁ କାଲି ଯେଉଁ

ରାସ୍ତାରେ ଫଳ ଗୋଟାଉଥିଲି, ସେହି ରାସ୍ତାରେ ଆମେ ପହଞ୍ଚିଗଲେଣି। ତେଣୁ ଆଉ ଚିନ୍ତା ନ କରି ଏହି ରାସ୍ତାରେ ସିଧା ସିଧା ଚାଲ। ମୁଁ ମଧ୍ୟ ସୁସ୍ଥ ହୋଇଗଲିଣି; ମୋ ଦେହରେ ବଳ ଆସିଗଲାଣି। ଏଥର ଶୀଘ୍ର ଚାଲ। ପିତାମାତାଙ୍କୁ ଦେଖିବାକୁ ମୋ ମନ ଅସ୍ଥିର ହେଉଛି।'' ଏପରି କହି ସେ ଆଶ୍ରମ ଅଭିମୁଖେ ଚାଲିଲେ।



## ଦ୍ୟୁମତ୍ସେନ ଓ ଶବ୍ୟାଙ୍କର ଚିନ୍ତା, ସତ୍ୟବାନ ଓ ସାବିତ୍ରୀ ଆଶ୍ରମରେ ପହଞ୍ଚିବା ଏବଂ ଦ୍ୟୁମତ୍ସେନ ଆପଣା ରାଜ୍ୟ ଫେରିପାଇବା

**ମାର୍କଣ୍ଡେୟ କହିଲେ**—ହେ ଯୁଧିଷ୍ଠିର ! ଇତିମଧ୍ୟରେ ଦ୍ୟୁମତ୍ସେନଙ୍କୁ ଦୃଷ୍ଟିଶକ୍ତି ମିଳିଗଲା, ତାଙ୍କୁ ସବୁକିଛି ସ୍ପଷ୍ଟ ଦିଶିଲା। ପୁତ୍ର ଆଶ୍ରମକୁ ନ ଫେରିବାରୁ ନାନା ଆଶଙ୍କାରେ ତାଙ୍କର ଚିନ୍ତା ବଢ଼ିଗଲା ଏବଂ ସେ ରାଣୀ ଶୈବ୍ୟାଙ୍କ ସହ ବାହାରକୁ ବାହାରି ଆଶ୍ରମ ଆଶ୍ରମ ବୁଲି ଖୋଜିବାକୁ ଲାଗିଲେ। ଆଖପାଖ ଆଶ୍ରମରେ ରହୁଥିବା ବ୍ରାହ୍ମଣମାନେ ତାଙ୍କୁ ଧୈର୍ଯ୍ୟ ଦେଇ ତାଙ୍କ ଆଶ୍ରମକୁ ନେଇଗଲେ ଏବଂ ବୟୋବୃଦ୍ଧ ବ୍ରାହ୍ମଣମାନେ ତାଙ୍କୁ ପ୍ରାଚୀନ ରାଜାମାନଙ୍କ ବିଷୟରେ ନାନା ପ୍ରକାର କାହାଣୀ ଶୁଣାଇ ଧୈର୍ଯ୍ୟ ଦେଲେ। ସୁବର୍ଣ୍ଣ ନାମକ ଜଣେ ସତ୍ୟବାଦୀ ବ୍ରାହ୍ମଣ ତାଙ୍କୁ କହିଲେ—''ସତ୍ୟବାନଙ୍କ ସ୍ତ୍ରୀ ସାବିତ୍ରୀ ହେଉଛି ତପସ୍ୱିନୀ, ଜିତେନ୍ଦ୍ରିୟା ଓ ସଦାଚାର ପାଳନକାରିଣୀ; ଏଣୁ ସତ୍ୟବାନ ନିଶ୍ଚୟ ଜୀବିତ ଥିବେ।'' ଗୌତମ ନାମକ ଅନ୍ୟଜଣେ ବ୍ରାହ୍ମଣ କହିଲେ—''ମୁଁ ଅଙ୍ଗ-ଉପାଙ୍ଗ ସହିତ ବେଦ ଅଧ୍ୟୟନ କରିଛି ଓ ବହୁତ ତପସ୍ୟା କରିଛି; ଏହାଛଡ଼ା କୁମାରାବସ୍ଥାରେ ବ୍ରହ୍ମଚର୍ଯ୍ୟ ପାଳନପୂର୍ବକ ଗୁରୁ ତଥା ଅଗ୍ନିଙ୍କୁ ସନ୍ତୁଷ୍ଟ କରିଛି। ଏହିସବୁ ତପସ୍ୟା ପ୍ରଭାବରେ ମୋତେ ଅନ୍ୟମାନଙ୍କ ମନକଥା ଜଣାପଡ଼ିଯାଏ। ତେଣୁ ମୋ କଥା ମାନନ୍ତୁ, ସତ୍ୟବାନ ନିଶ୍ଚୟ ଜୀବିତ ଅଛନ୍ତି।'' ତା'ପରେ ଅନ୍ୟ ଋଷିମାନେ କହିଲେ—''ସତ୍ୟବାନଙ୍କ ସ୍ତ୍ରୀ ସାବିତ୍ରୀଙ୍କ ଠାରେ ଅବୈଧବ୍ୟ ସୂଚକ ସମସ୍ତ ଶୁଭଲକ୍ଷଣ ବିଦ୍ୟମାନ,

ତେଣୁ ସତ୍ୟବାନ ନିଶ୍ଚୟ ଜୀବିତ ଅଛନ୍ତି।'' ଦାଲ୍‌ଭ୍ୟ କହିଲେ— ''ଦେଖିଲେ ତ ! ଆପଣଙ୍କୁ ଦୃଷ୍ଟିଶକ୍ତି ମିଳିଗଲାଣି; ତା'ଛଡ଼ା ସାବିତ୍ରୀ ବ୍ରତର ପାରଣା ନ କରି ସତ୍ୟବାନଙ୍କ ସହ ଯାଇଛି ମାନେ ସେ ନିଶ୍ଚୟ ଜୀବିତ ଥିବେ।''

ସତ୍ୟବାଦୀ ଋଷିମାନେ ଦ୍ୟୁମତ୍‌ସେନଙ୍କୁ ଏପରି ବୁଝାଇବାରୁ ସେ ସମସ୍ତଙ୍କ କଥା ମାନି ସ୍ଥିରଚିତ୍ତ ହେଲେ। କିଛି ସମୟ ମଧ୍ୟରେ ସତ୍ୟବାନ ଓ ସାବିତ୍ରୀ ଆସିଗଲେ। ସେମାନେ ପ୍ରସନ୍ନ ମନରେ ଆଶ୍ରମରେ ପ୍ରବେଶ କଲେ। ସେମାନଙ୍କୁ ଦେଖି ବ୍ରାହ୍ମଣମାନେ କହିଲେ—''ହେଇ ଦେଖନ୍ତୁ ! ଆପଣଙ୍କୁ ନେତ୍ର ତ ମିଳିଗଲା ଏବେ ପୁତ୍ର ବି ମିଳିଗଲା।'' ତା'ପରେ ସେମାନେ ସତ୍ୟବାନଙ୍କୁ ପଗ୍ଚରିଲେ—''ତୁମେ ତ ସ୍ତ୍ରୀ ସହିତ ବଣକୁ ଯାଇଥିଲ, ହେଲେ ଶୀଘ୍ର କାହିଁକି ନ ଫେରିଲ ! ଏତେ ରାତି କାହିଁକି ହେଲା ? କିଛି ଅସୁବିଧାରେ ପଡ଼ିଥିଲ କି? ରାଜକୁମାର ! ଆଜି ତ ତୁମ ପିତାମାତା ଓ ଆମେ ସବୁ ବଡ଼ ଚିନ୍ତାରେ ପଡ଼ି ଯାଇଥିଲୁ। ଏତେ ଡେରି ହେବାର କାରଣ କ'ଣ?

**ସତ୍ୟବାନ କହିଲେ**—ମୁଁ ପିତାଙ୍କ ଆଜ୍ଞାରେ ସାବିତ୍ରୀକୁ ସଙ୍ଗରେ ନେଇ ବଣକୁ ଯାଇଥିଲି। ବଣରେ କାଠ ହାଣୁ ହାଣୁ ମୋର ମୁଣ୍ଡବିନ୍ଧା ଆରମ୍ଭ ହୋଇଗଲା। ମୋର ଅନୁମାନ, ସେହି ଯନ୍ତ୍ରଣା ହେତୁ ମୁଁ ବହୁତ ସମୟ ଶୋଇପଡ଼ିଥିଲି। ଏତେ ସମୟ ମୁଁ ପୂର୍ବରୁ କେବେ ବି ଶୋଇ ନ ଥିଲି। ଆପଣମାନେ ଆଦୌ ଚିନ୍ତା କରନ୍ତୁ ନାହିଁ। ଏହି କାରଣରୁ ଆମର ଫେରିବାରେ ବିଳମ୍ବ ହୋଇଗଲା, ଏହା ଛଡ଼ା ଅନ୍ୟ କିଛି କାରଣ ନାହିଁ।

**ଗୌତମ କହିଲେ**—ସତ୍ୟବାନ ! ଆଶ୍ଚର୍ଯ୍ୟର କଥା ଯେ, ତୁମ ପିତା ଦ୍ୟୁମତ୍‌ସେନଙ୍କୁ ଅକସ୍ମାତ୍ ଆଜି ଦୃଷ୍ଟିଶକ୍ତି ମିଳିଯାଇଛି। ତୁମ କଥାରୁ ଜଣାପଡୁଛି, ତୁମକୁ ଏହାର ପ୍ରକୃତ ରହସ୍ୟ ଜଣାନାହିଁ। ଏସବୁ କଥା ସାବିତ୍ରୀ ହିଁ କହିପାରିବ। ସାବିତ୍ରୀ ! ତୁମ ପ୍ରଭାବ ଦୃଷ୍ଟିରୁ ଆମେ ତୁମକୁ ସାକ୍ଷାତ୍ ସାବିତ୍ରୀ ଦେବୀ (ବ୍ରହ୍ମାଣୀ)ଙ୍କ ସମାନ ମନେ କରୁଛୁ। ତୁମକୁ ଅତୀତ ଓ ଭବିଷ୍ୟତର କଥା ମଧ୍ୟ ଜଣା। ତୁମେ ଏହାର କାରଣ ନିଶ୍ଚୟ ଜାଣିଛ।

ଯଦି ଏଥିରେ କୌଣସି ଗୋପନୀୟ ବିଷୟ ନ ଥାଏ, ତେବେ ଏ ଘଟଣାର ରହସ୍ୟ ଆମକୁ କୁହ । ଆମର ଶୁଣିବାକୁ ଭାରି ଇଚ୍ଛା ।

**ସାବିତ୍ରୀ କହିଲେ**—ଆପଣ ଯାହା ଭାବୁଛନ୍ତି, ସମ୍ପୂର୍ଣ୍ଣ ଠିକ୍ । ଆପଣଙ୍କ ଧାରଣା ମିଥ୍ୟା ହୋଇ ନ ପାରେ । ମୋ କଥା ମଧ୍ୟ ଆପଣଙ୍କୁ ଅଛପା ନାହିଁ । ତେଣୁ ଯାହା ସତ୍ୟ ଘଟଣା, ମୁଁ ତାହା କହୁଛି, ଶୁଣନ୍ତୁ । ଦେବର୍ଷି ନାରଦ ମୋତେ ପୂର୍ବରୁ ମୋ ସ୍ୱାମୀଙ୍କର ମୃତ୍ୟୁଦିବସ ବିଷୟରେ ସୂଚନା ଦେଇଥିଲେ । ଆଜି ହିଁ ଥିଲା ସେହି ଦିନ । ସେଥିପାଇଁ ମୁଁ ଆଜି ତାଙ୍କୁ ଏକୁଟିଆ ବଣକୁ ଛାଡ଼ି ନ ଥିଲି । ବଣରେ ଏ ଶୋଇଯିବା ପରେ ଯମରାଜ ଆସିଲେ ଏବଂ ଏହାଙ୍କୁ ବାନ୍ଧି ଦକ୍ଷିଣ ଦିଗ ଆଡ଼କୁ ନେଇ ଚାଲିଲେ । ମୁଁ ସତ୍ୟ ବଚନ ଦ୍ୱାରା ସେହି ଦେବଶ୍ରେଷ୍ଠଙ୍କୁ ସ୍ତୁତି କଲି । ସେ ପ୍ରସନ୍ନ ହୋଇ ମୋତେ ପାଞ୍ଚଟି ବର ଦେଲେ । ସେ କ'ଣ କ'ଣ ବର ଦେଲେ, ଶୁଣନ୍ତୁ । ମୋ ଶ୍ୱଶୁରଙ୍କୁ ନେତ୍ର ଓ ରାଜ୍ୟ ମିଳିବା—ଏହା ଥିଲା ପ୍ରଥମ ଦୁଇଟି ବର । ମୋ ପିତାଙ୍କର ଶହେ ପୁତ୍ର ହେବା ଓ ମୋର ଶହେ ପୁତ୍ର ହେବା—ଏହା ଥିଲା ପରବର୍ତ୍ତୀ ଦୁଇଟି ବର । ପଞ୍ଚମ ବର ଅନୁସାରେ ମୋ ସ୍ୱାମୀଙ୍କୁ ଚାରିଶହ ବର୍ଷ ପରମାୟୁ ମିଳିଲା । କେବଳ ସ୍ୱାମୀଙ୍କ ପୁନର୍ଜୀବନ ଲାଭ ପାଇଁ ମୁଁ ଏ ବ୍ରତ କରୁଥିଲି* । ଏହା ହିଁ ଥିଲା ଏ ଘଟଣାର ଗୂଢ଼ ରହସ୍ୟ ।

**ଋଷିମାନେ କହିଲେ**—ସାଧ୍ୱୀ ! ତୁମେ ସୁଶୀଳା, ବ୍ରତଶୀଳା ଓ ପବିତ୍ର ଆଚରଣକାରିଣୀ । ତୁମେ ଉତ୍ତମ କୁଳରେ ଜନ୍ମ ଗ୍ରହଣ କରିଛ । ରାଜା ଦ୍ୟୁମତ୍ସେନଙ୍କ ଦୁଃଖାଭିଭୂତ ପରିବାର ଆଜି ଅନ୍ଧକାରମୟ ଗର୍ତ୍ତରେ ବୁଡ଼ିଯାଇଥାନ୍ତା, ତୁମେ ସେଥିରୁ ତାହାକୁ ଉଦ୍ଧାର କରିଦେଲ ।

---

* **ଚକ୍ଷୁଷୀ ଚ ସ୍ୱରାଜ୍ୟଂ ଚ ଦ୍ୱୌ ବରୌ ଶ୍ୱଶୁରସ୍ୟ ମେ ।**
**ଲବ୍ଧଂ ପିତୁଃ ପୁତ୍ରଶତଂ ପୁତ୍ରାଣାଂ ଚାତ୍ମନଃ ଶତମ୍ ॥**
**ଚତୁର୍ବର୍ଷଶତାୟୁର୍ମେ ଭର୍ତ୍ତା ଲବ୍ଧଶ୍ଚ ସତ୍ୟବାନ୍ ।**
**ଭର୍ତ୍ତୁର୍ହିଜୀବିତାର୍ଥଂ ତୁ ମୟା ଚୀର୍ଣ୍ଣଂ ତ୍ୱିଦଂ ବ୍ରତମ୍ ॥**
(ମହାଭା. ବନ. ୨୯୮ । ୪୦, ୪୧)

**ମାର୍କଣ୍ଡେୟ କହିଲେ**—ରାଜନ୍! ସେଠାରେ ଏକତ୍ରିତ ହୋଇଥିବା ଋଷିମାନେ ଏହିରୂପେ ପ୍ରଶଂସା କରି ନାରୀରତ୍ନ ସାବିତ୍ରୀଙ୍କୁ ସମ୍ମାନିତ କଲେ ଏବଂ ରାଜା ଦ୍ୟୁମତ୍‌ସେନଙ୍କ ଠାରୁ ଅନୁମତି ନେଇ ଆନନ୍ଦ ମନରେ ନିଜ ନିଜ ଆଶ୍ରମକୁ ଫେରିଗଲେ। ପରଦିନ ଶାଲ୍ୱଦେଶର ସମସ୍ତ ରାଜକର୍ମଚାରୀ ଆସି ଦ୍ୟୁମତ୍‌ସେନଙ୍କୁ କହିଲେ—"ଆମ ଦେଶରେ ଯିଏ ରାଜା ହୋଇଥିଲେ, ତାଙ୍କୁ ତାଙ୍କରି ମନ୍ତ୍ରୀ ମାରିଦେଇଛନ୍ତି ଏବଂ ରାଜାଙ୍କର କୌଣସି ସହାୟକ ଓ ସ୍ୱଜନଙ୍କୁ ମଧ୍ୟ ସେ ଜୀବିତ ଛାଡ଼ିନାହାନ୍ତି। ଆପଣଙ୍କ ଶତ୍ରୁପକ୍ଷର ସୈନ୍ୟମାନେ ମଧ୍ୟ ପଳାୟନ କରିଛନ୍ତି। ତେଣୁ ସମସ୍ତ ପ୍ରଜାବର୍ଗ ଏକମତ ହୋଇ ଏହି ନିର୍ଣ୍ଣୟ ନେଇଛନ୍ତି ଯେ, ଆପଣଙ୍କୁ ଦିଶୁଥାଉ ବା ନ ଦିଶୁଥାଉ ଆପଣ ହିଁ ସେମାନଙ୍କର ରାଜା ହେବେ। ରାଜନ୍! ପ୍ରଜାମାନଙ୍କ ମଧ୍ୟରେ ଏଭଳି ନିର୍ଣ୍ଣୟ ହେବା ପରେ ଆମକୁ ଏଠାକୁ ପଠାଯାଇଛି। ଆମେ ଆପଣଙ୍କ ନିମନ୍ତେ ପାଲିଙ୍କି ଆଦି ଓ ଚତୁରଙ୍ଗିଣୀ ସେନା ସଙ୍ଗରେ ନେଇଆସିଛୁ। ଆପଣଙ୍କର ମଙ୍ଗଳ ହେଉ। ଏଥର ଆପଣଙ୍କର ପୂର୍ବ ରାଜ୍ୟକୁ ଫେରିବା ହୁଅନ୍ତୁ। ନଗରରେ ଆପଣଙ୍କର ଜୟଗାନ କରାଯାଇଛି। ତେଣୁ ଆପଣଙ୍କ ପୂର୍ବପୁରୁଷଙ୍କର ରାଜଗାଦିରେ ଆପଣ ଚିରକାଳ ପ୍ରତିଷ୍ଠିତ ରହନ୍ତୁ।"

ତା'ପରେ ସେମାନେ ଦେଖିଲେ ଯେ ଦ୍ୟୁମତ୍‌ସେନ ଦୃଷ୍ଟିଶକ୍ତି ଫେରି ପାଇଛନ୍ତି ଓ ସୁସ୍ଥ-ସବଳ ମଧ୍ୟ ହୋଇଯାଇଛନ୍ତି। ଏହା ଦେଖି ସେମାନଙ୍କ ନେତ୍ର ଆଶ୍ଚର୍ଯ୍ୟରେ ପ୍ରଫୁଲ୍ଲିତ ହୋଇଗଲା ଏବଂ ସେମାନେ ତାଙ୍କୁ ମୁଣ୍ଡ ନୁଆଇଁ ପ୍ରଣାମ କଲେ। ରାଜା ଆଶ୍ରମବାସୀ ବୃଦ୍ଧ ବ୍ରାହ୍ମଣମାନଙ୍କୁ ଅଭିବାଦନ ଜଣାଇ ଏବଂ ସେମାନଙ୍କ ଠାରୁ ସମ୍ମାନ ପାଇ ଆପଣା ରାଜଧାନୀକୁ ଫେରିଗଲେ। ସେଠାରେ ପହଞ୍ଚିବା ପରେ ପୁରୋହିତମାନେ ଆନନ୍ଦମନରେ ଦ୍ୟୁମତ୍‌ସେନଙ୍କର ରାଜ୍ୟାଭିଷେକ କରିଦେଲେ ଏବଂ ତାଙ୍କର ପୁତ୍ର ମହାତ୍ମା ସତ୍ୟବାନଙ୍କୁ ଯୁବରାଜପଦରେ ନିଯୁକ୍ତ କରିଦେଲେ। ଏ ଘଟଣାର ବହୁକାଳ ପରେ ସାବିତ୍ରୀଙ୍କର ଶହେ ପୁତ୍ର ହେଲେ; ସେମାନେ ସମସ୍ତେ ରଣଧୀର, ପରାକ୍ରମୀ ଓ ଯଶସ୍ୱୀ ହେଲେ। ସେପଟେ ମଦ୍ରରାଜ

ଅଶ୍ୱପତିଙ୍କ ରାଣୀ ମାଳବୀଙ୍କ ଗର୍ଭରୁ ସାବିତ୍ରୀଙ୍କର ଶହେ ଭାଇ ଜନ୍ମ ହେଲେ। ଏହିରୂପେ ସାବିତ୍ରୀ ନିଜକୁ ତଥା ପିତାମାତା, ଶାଶୁଶ୍ୱଶୁର ଓ ସ୍ୱାମୀଙ୍କର କୁଳକୁ ସଙ୍କଟରୁ ରକ୍ଷା କଲେ। ହେ ରାଜନ୍ ! ଏ ସୁଶୀଳା, କୁଳୀନା ଓ କଲ୍ୟାଣୀ ଦ୍ରୌପଦୀ ମଧ୍ୟ ସେହି ସାବିତ୍ରୀ ପରି ଆପଣମାନଙ୍କୁ ଉଦ୍ଧାର କରିବ।

**ବୈଶମ୍ପାୟନ କହିଲେ**—ରାଜନ୍ !ଏହିପରି ଭାବରେ ମାର୍କଣ୍ଡେୟ ବୁଝାଇବାରୁ ମହାରାଜ ଯୁଧିଷ୍ଠିର ଶୋକସନ୍ତାପରୁ ମୁକ୍ତ ହୋଇ କାମ୍ୟକବନରେ କାଳ କାଟିଲେ। ଯେଉଁ ବ୍ୟକ୍ତି ଏହି ପରମ ପବିତ୍ର ସାବିତ୍ରୀଚରିତ୍ର ଶ୍ରଦ୍ଧାପୂର୍ବକ ଶୁଣିବ, ତାର ସମସ୍ତ ମନୋରଥ ପୂର୍ଣ୍ଣ ହେବାରୁ ସେ ସୁଖଲାଭ କରିବ ଏବଂ କଦାପି ଦୁଃଖରେ ପଡ଼ିବ ନାହିଁ*।

***

## ସାବିତ୍ରୀଙ୍କ ଜୀବନରୁ ଶିକ୍ଷା

ମାଆ-ଭଉଣୀମାନେ ଓ ଭାଇମାନେ ସମସ୍ତେ ସାବିତ୍ରୀଙ୍କ ଚରିତ୍ରରୁ ଏହି ଶିକ୍ଷା ଗ୍ରହଣ କରିବା ଉଚିତ ଯେ ଉତ୍ତମ ପୁରୁଷ ଯାହା ଥରେ କହିଦିଅନ୍ତି, ତାହା ସତ୍ୟ କରି ଦେଖାନ୍ତି। ତେଣୁ ବାଣୀରେ କିଛି କହିଦେଲା ପରେ ତାହାକୁ ପାଳନ କରିବା ଆବଶ୍ୟକ। ଭାଇମାନେ ବିଗ୍ଚର କରିବା ଉଚିତ ଯେ ଭାଇ-ଭାଇଙ୍କ ମଧ୍ୟରେ ବାଣ୍ଟକୁଣ୍ଟ ଜୀବନରେ ଥରେମାତ୍ର ହୁଏ। ତେଣୁ ବାଣ୍ଟକୁଣ୍ଟ ସମୟରେ ଉଦାରତା ଓ ତ୍ୟାଗ ଭାବନା ଜାଗ୍ରତ ରଖିବା ଉଚିତ; ଏହା ମଣିଷ ପାଇଁ କଲ୍ୟାଣକାରୀ ଓ ଉଜ୍ଜ୍ୱଳ କୀର୍ତ୍ତି ବିସ୍ତାରକାରୀ ହେବା ସଙ୍ଗେ ସଙ୍ଗେ ଲୋକମାନଙ୍କ ପାଇଁ ଆଦର୍ଶ ଶିକ୍ଷା ହେବ। ତୃତୀୟ ଶିକ୍ଷାଟି ହେଲା, ସାବିତ୍ରୀଙ୍କ ପାତିବ୍ରତ୍ୟ ଧର୍ମରେ ନିଷ୍ଠା। ମନ ମଧ୍ୟରେ ଯଦି ଥରେ କାହାକୁ ସ୍ୱାମୀରୂପେ ବରଣ କରି ନିଆଯାଏ,

* **ଯଶ୍ଚେଦଂ ଶୃଣୁୟାଦ୍ ଭକ୍ତ୍ୟା ସାବିତ୍ର୍ୟାଖ୍ୟାନମୁତ୍ତମମ୍।**
**ସ ସୁଖୀ ସର୍ବସିଦ୍ଧାର୍ଥୋ ନ ଦୁଃଖଂ ପ୍ରାପ୍ନୁୟାନ୍ନରଃ॥**
(ମହାଭା. ବନ. ୨୯୯।୧୭)

ତେବେ ଯେକୌଣସି ସମୟରେ ସ୍ୱାମୀଙ୍କର ଆୟୁଷ ପୂରିବାର ଥାଉ ପଛକେ, ଆଉ କୌଣସି ଦ୍ୱିତୀୟ ପୁରୁଷ କଥା ଚିନ୍ତା ବି କରିବା କଥା ନୁହେଁ—ଏହା ହିଁ ଥିଲା ସାବିତ୍ରୀଙ୍କର ବ୍ରତ । ସାବିତ୍ରୀ ସତ୍ୟବାନଙ୍କ ସଙ୍ଗେ ବିବାହ କଲେ । ଅଜାଣତରେ ନୁହେଁ, ବରଂ ସ୍ୱାମୀଙ୍କର ଆୟୁଷ ମାତ୍ର ବର୍ଷେ ବାକି ଅଛି ବୋଲି ଜାଣି ମଧ୍ୟ ତାଙ୍କୁ ପତିରୂପେ ବରଣ କଲେ । କେବଳ ପାତିବ୍ରତ୍ୟ ଧର୍ମକୁ ବୁଝିଥିବାରୁ ହିଁ ସେ ଏପରି କଲେ । ସେ ଦୃଢ଼ ନିର୍ଣ୍ଣୟ କରିନେଇଥିଲେ ଯେ "ଯଦି ମୁଁ ପତିବ୍ରତାଧର୍ମ ପାଳନ କରିବି, ମୋ ସ୍ୱାମୀ କଦାପି ମରିପାରିବେ ନାହିଁ ।"

ସାବିତ୍ରୀଙ୍କର ଏହି ଆଖ୍ୟାନରୁ ଆହୁରି ଅନେକ ଶିକ୍ଷା ମିଳିଥାଏ । ସେଗୁଡ଼ିକ ଜୀବନରେ ଆଚରଣ କରାଯିବାର ଯୋଗ୍ୟ । କନ୍ୟାର ଅଭିଭାବକମାନେ ବର ଖୋଜିବା ବେଳେ ବରର ଘରକୁ ପ୍ରାଧାନ୍ୟ ନ ଦେଇ ବରକୁ ହିଁ ପ୍ରାଧାନ୍ୟ ଦେବା ଉଚିତ । ସାବିତ୍ରୀ ଘରକୁ ପ୍ରାଧାନ୍ୟ ନ ଦେଇ ବରକୁ ପ୍ରାଧାନ୍ୟ ଦେଲେ । ଏ ଉପାଖ୍ୟାନରୁ ଏକଥା ମଧ୍ୟ ଶିକ୍ଷଣୀୟ ଯେ, ସାବିତ୍ରୀ ଶାଶୁଘରକୁ ଆସିବା ପରେ ବାପଘରୁ ମିଳିଥିବା ମୂଲ୍ୟବାନ୍ ଗହଣାଗାଣ୍ଠି, ଲୁଗାପଟା ଦେହରୁ କାଢ଼ିଦେଇ ଶାଶୁଘରେ ଯେଉଁପରି ଚଳଣି, ସେହି ଅନୁସାରେ ସାଦାସିଧା ବେଶଭୂଷା ଧାରଣ କରି ଚଳିଲେ । ପତିଦେବ ବଣର କନ୍ଦ, ମୂଳ ଓ ଫଳ ଖାଇ ଜୀବନ ବିତାଉଥିବାରୁ ସେ ମଧ୍ୟ ତାହା ଖାଇ ଜୀବନ ରକ୍ଷା କଲେ ଏବଂ ତାହାକୁ ଅମୃତ ତୁଲ୍ୟ ମନେ କଲେ । ସାବିତ୍ରୀ ଯେଉଁପରି ତାଙ୍କ ଶାଶୁଶ୍ୱଶୁର ଓ ସ୍ୱାମୀଙ୍କର ସେବା କରୁଥିଲେ, ମାଆଭଉଣୀମାନେ ସେହିପରି ନିଜ ନିଜର ଶାଶୁଶ୍ୱଶୁର ଓ ସ୍ୱାମୀଙ୍କର ସେବା କରିବାକୁ ଶିକ୍ଷା ଗ୍ରହଣ କରିବା ଆବଶ୍ୟକ । ଯଦି କାହାକୁ ବର ମାଗିବେ, ପ୍ରଥମେ ନିଜ ପାଇଁ ମାଗିବେ ନାହିଁ । ପ୍ରଥମେ ଶାଶୁଶ୍ୱଶୁରଙ୍କ ପାଇଁ ମାଗିବେ, ତା'ପରେ ନିଜ ପିତାଙ୍କ ପାଇଁ ମାଗିବେ ଏବଂ ଶେଷରେ ନିଜ ପାଇଁ ମାଗିବେ । ଏ ଯେଉଁ ଅଦ୍ଭୁତ ତ୍ୟାଗ, ଏଭଳି ତ୍ୟାଗ ମଧ୍ୟ ଶିକ୍ଷଣୀୟ । ସାବିତ୍ରୀ ଯମରାଜାଙ୍କ ସହ ଯେଉଁପରି ବାର୍ତ୍ତାଳାପ କଲେ, ସେଥିରେ ମଧ୍ୟ ଅନେକ ଶିକ୍ଷଣୀୟ କଥା

ରହିଛି । ତାଙ୍କ ବଚନରେ କେବଳ ସ୍ୱାର୍ଥତ୍ୟାଗର ଭାବନା ଯେ ଥିଲା, ତା'ନୁହେଁ, ସେ ଯମରାଜାଙ୍କୁ ପ୍ରସନ୍ନ କରିବା ପାଇଁ ଅନେକ ପ୍ରକାର ବିନୟଯୁକ୍ତ ବଚନ କହିଲେ, ନୀତିସଙ୍ଗତ କଥା କହିଲେ । ତାଙ୍କ କଥାରେ ପ୍ରସନ୍ନ ହୋଇ ଯମରାଜାଙ୍କୁ ଏହା ମଧ୍ୟ କହିବାକୁ ପଡ଼ିଲା ଯେ, "ତୁମ ପରି ଗୁଣବତୀ ସ୍ତ୍ରୀ ମୋତେ ବି ମିଳି ନାହିଁ । ତୁମେ ଏଭଳି କଥା ସବୁ କହି ମୋତେ ଜିତିଗଲ ।" ଏହି ଆଖ୍ୟାନର ପ୍ରତ୍ୟେକ ଚରିତ୍ରରୁ ଆମ୍ଭେମାନେ ଶିକ୍ଷା ନେବା ଉଚିତ । ସତ୍ୟବାନ ଓ ସାବିତ୍ରୀଙ୍କର ଏହି ଚରିତ୍ରରୁ ସେମାନଙ୍କର ଗୁଣ ଗ୍ରହଣ କରିବା ଆବଶ୍ୟକ । ସାବିତ୍ରୀଙ୍କ ପିତାମାତାଙ୍କର ଓ ଶାଶୁଶ୍ୱଶୁରଙ୍କର ଗୁଣ ମଧ୍ୟ ଗ୍ରହଣ କରିବା ଉଚିତ । ଏକଥା ଜାଣିରଖିବା ଉଚିତ ଯେ ଯେଉଁମାନେ ବନରେ ରହି ସରଳ ଓ ନିରାଡ଼ମ୍ବର ଜୀବନ ବିତାଉଛନ୍ତି, ସେମାନଙ୍କର ମହିମା ବହୁତ ଅଧିକ । ରାଜା ଦ୍ୟୁମତ୍‌ସେନ ଓ ତାଙ୍କ ସ୍ତ୍ରୀ ବହୁତ ଉଚ୍ଚକୋଟିର ବ୍ୟକ୍ତି ଥିଲେ । ସାବିତ୍ରୀଙ୍କ ପିତାମାତା ମଧ୍ୟ ବହୁତ ଉଚ୍ଚକୋଟିର ବ୍ୟକ୍ତି ଥିଲେ । ସାବିତ୍ରୀ ଓ ସତ୍ୟବାନଙ୍କ ଆଖ୍ୟାନ ଜ୍ୟେଷ୍ଠମାସରେ 'ସାବିତ୍ରୀ ବ୍ରତ' ଦିନ ଶୁଣିବା ଆବଶ୍ୟକ ଏବଂ ସେଦିନ ବ୍ରତ ମଧ୍ୟ କରିବା ବିଧେୟ । ଏହି ଆଖ୍ୟାନ ଶୁଣିଲେ ସୌଭାଗ୍ୟ ଲାଭ ହୁଏ । ବିଧବା ମାଆଭଉଣୀମାନେ ଶିକ୍ଷା ନେବା କଥା ଯେ, ପ୍ରାଣ ଗ୍ଲାନିଯାଉ ପଛେ ସ୍ୱପ୍ନରେ ମଧ୍ୟ ଅନ୍ୟ ପୁରୁଷ କଥା ଭାବିବା ଉଚିତ ନୁହେଁ ।

***

## ସୂକ୍ତିମାଳା

**୧. ନ ପ୍ରମାଦସ୍ତ୍ୱ ଧର୍ମେଷୁ କର୍ତ୍ତବ୍ୟସ୍ତେ କଥଞ୍ଚନ ॥**

( ମହାଭା. ବନ. ୨୯୩ ।୧୩ )

"ଧର୍ମପାଳନ କରିବାରେ ତୁମେ କଦାପି କୌଣସି ପ୍ରକାର ପ୍ରମାଦ କରିବା ଉଚିତ ନୁହେଁ ।"

**୨. 'ସନ୍ତାନଂ ପରମୋ ଧର୍ମଃ'** (ମହାଭା. ବନ. ୨୯୩ । ୧୫)

"ନ୍ୟାୟୋଚିତ ସନ୍ତାନୋତ୍ପାଦନ ପରମ ଧର୍ମ ।"

୩. **ଅପ୍ରଦାତା ପିତା ବାଚ୍ୟୋ ବାଚ୍ୟଶ୍ଚାନୁପୟନ୍ ପତିଃ ।**
**ମୃତେ ଭର୍ତ୍ତରି ପୁତ୍ରଶ୍ଚ ବାଚ୍ୟୋ ମାତୁରରକ୍ଷିତା ॥**

(ମହାଭା. ବନ. ୨୯୩ । ୩୫)

"କନ୍ୟା ବିବାହ ଯୋଗ୍ୟ ହୋଇଯିବା ପରେ ମଧ୍ୟ ତାହାର ବିବାହ କରୁ ନ ଥିବା ପିତା ନିନ୍ଦନୀୟ, ଋତୁକାଳରେ ପତ୍ନୀ ସଙ୍ଗେ ସମାଗମ କରୁ ନ ଥିବା ପତି ନିନ୍ଦନୀୟ ତଥା ସ୍ୱାମୀବିରହିତା ବିଧବା ମାତାକୁ ରକ୍ଷା କରୁ ନ ଥିବା ପୁତ୍ର ନିନ୍ଦନୀୟ ।"

୪. **ସକୃଦଂଶୋ ନିପତତି ସକୃତ୍ କନ୍ୟା ପ୍ରଦୀୟତେ ।**
**ସକୃଦାହ ଦଦାନୀତି ତ୍ରୀଣ୍ୟେତାନି ସକୃତ୍ ସକୃତ୍ ॥**

(ମହାଭା. ବନ. ୨୯୪ ।୨୬)

"ଧନାଦି ବାଣ୍ଟକୁଣ୍ଟ ଥରେମାତ୍ର ହୁଏ, କନ୍ୟା ଦାନ ଥରେମାତ୍ର କରାଯାଏ ଏବଂ ଉତ୍ତମ ଦାତା 'ମୁଁ ଦେବି' ଏଭଳି ବାଗ୍‌ଦାନ ଥରେମାତ୍ର କରିଥାଏ । ଏ ତିନୋଟି କଥା ମାତ୍ର ଥରେ ଲେଖାଏଁ ହୋଇଥାଏ ।"

୫. **'ସୁଖଂ ଚ ଦୁଃଖଂ ଚ ଭବାଭବାତ୍ମକମ୍'**

(ମହାଭା. ବନ. ୨୯୫ । ୧୦)

"ସୁଖ ଓ ଦୁଃଖ ଉତ୍ପନ୍ନ ହୁଏ ଓ ପୁଣି ନଷ୍ଟ ହୋଇଯାଏ ।"

୬. **ପ୍ରାହୁଃ ସାପ୍ତପଦଂ ମୈତ୍ରଂ ବୁଧାସ୍ତତ୍ତ୍ୱାର୍ଥଦର୍ଶିନଃ ।**

"ତତ୍ତ୍ୱାର୍ଥଦର୍ଶୀ ବିଦ୍ୱାନମାନେ କହନ୍ତି ଯେ, କାହା ସଙ୍ଗରେ ସାତପାଦ ଚାଲିଲେ ମୈତ୍ରୀ ସମ୍ବନ୍ଧ ସ୍ଥାପିତ ହୋଇଯାଏ ।"

୭. **ସତାଂ ସକୃତ୍ ସଙ୍ଗତମୀପ୍ସିତଂ ପରଂ**
**ତତଃ ପରଂ ମିତ୍ରମିତି ପ୍ରଚକ୍ଷତେ ।**
**ନ ଚାଫଳଂ ସତ୍‌ପୁରୁଷେଣ ସଙ୍ଗତଂ**
**ତତଃ ସତାଂ ସନ୍ନିବସେତ୍ ସମାଗମେ ॥**

(ମହାଭା. ବନ. ୨୯୭ । ୩୦)

"ଥରେମାତ୍ର ସତ୍‌ପୁରୁଷଙ୍କ ସାନ୍ନିଧ୍ୟ ପାଇବା ମଧ୍ୟ ଅତ୍ୟନ୍ତ ଅଭୀଷ୍ଟ ହୋଇଥାଏ; ତାଙ୍କ ସହ ମିତ୍ରତା ହୋଇଯିବା ତ ଆହୁରି ଉତ୍ତମ । ସାଧୁପୁରୁଷଙ୍କ ସଙ୍ଗତି କଦାପି ନିଷ୍ଫଳ ହୁଏ ନାହିଁ । ତେଣୁ ସର୍ବଦା ସତ୍‌ପୁରୁଷଙ୍କ ସମୀପରେ ରହିବା ଉଚିତ ।"

୮. **ଅଦ୍ରୋହଃ ସର୍ବଭୂତେଷୁ କର୍ମଣା ମନସା ଗିରା ।**
**ଅନୁଗ୍ରହଶ୍ଚ ଦାନଂ ଚ ସତାଂ ଧର୍ମଃ ସନାତନଃ ॥**

( ମହାଭା. ବନ. ୨୯୭ । ୩୫ )

ମନ, ବାଣୀ ଓ କ୍ରିୟା ଦ୍ୱାରା କୌଣସି ପ୍ରାଣୀ ପ୍ରତି ଦ୍ରୋହ ନ କରିବା, ସମସ୍ତଙ୍କ ପ୍ରତି ଦୟାଭାବ ରଖିବା ଓ ଦାନ ଦେବା—ଏହା ସାଧୁପୁରୁଷଙ୍କର ସନାତନ ଧର୍ମ ।''

୯. **ସୌହୃଦାତ୍ ସର୍ବଭୂତାନାଂ ବିଶ୍ୱାସୋ ନାମ ଜାୟତେ ।**
**ତସ୍ମାତ୍ ସତ୍ସୁ ବିଶେଷେଣ ବିଶ୍ୱାସଂ କୁରୁତେ ଜନଃ ॥**

(ମହାଭା. ବନ. ୨୯୭ । ୪୩)

''ସୌହାର୍ଦ୍ଦ୍ୟ ହେତୁ ପ୍ରାଣୀମାନଙ୍କର ପରସ୍ପର ପ୍ରତି ବିଶ୍ୱାସ ଜନ୍ମିଥାଏ । ସାଧୁସନ୍ଥଙ୍କ ଠାରେ ସୌହାର୍ଦ୍ଦ୍ୟ ଥିବାରୁ ହିଁ ସେମାନଙ୍କୁ ଲୋକମାନେ ଅଧିକ ବିଶ୍ୱାସ କରିଥାନ୍ତି ।''

୧୦. **ସତାଂ ସଦା ଶାଶ୍ୱତଧର୍ମବୃତ୍ତିଃ**
**ସନ୍ତୋ ନ ସୀଦନ୍ତି ନ ଚ ବ୍ୟଥନ୍ତି ।**
**ସତାଂ ସଦ୍ଭିର୍ନାଫଳଃ ସଙ୍ଗମୋଽସ୍ତି**
**ସଦ୍ଭ୍ୟୋ ଭୟଂ ନାନୁବର୍ତ୍ତନ୍ତି ସନ୍ତଃ ॥**

(ମହାଭା. ବନ. ୨୯୭ । ୪୭)

''ସତ୍‌ପୁରୁଷଙ୍କ ଚିତ୍ତବୃତ୍ତି ନିରନ୍ତର ଧର୍ମରେ ସଂଲଗ୍ନ ଥାଏ । ଶ୍ରେଷ୍ଠ ପୁରୁଷ କଦାପି ଦୁଃଖିତ ବା ବ୍ୟଥିତ ହୁଅନ୍ତି ନାହିଁ । ସତ୍‌ପୁରୁଷଙ୍କର ସନ୍ଥଜନଙ୍କ ସଙ୍ଗେ ଯେଉଁ ସମାଗମ ହୁଏ, ତାହା କଦାପି ନିଷ୍ଫଳ ହୁଏ ନାହିଁ । ଶ୍ରେଷ୍ଠ ପୁରୁଷ ସନ୍ଥଜନଙ୍କ ଠାରୁ କଦାପି ଭୟର ଆଶଙ୍କା କରନ୍ତି ନାହିଁ ।''

**॥ ଜୟ ଶ୍ରୀଚନ୍ଦ୍ରମୌଳି ॥**

